# ମେଲେରିଆ ପାଠ

## ( ମେଲେରିଆ ତଥ୍ୟ ସଂଗ୍ରହ )

ରାଓବାହାଦୁର ଏମ୍. ଭି. ଆପ୍ପାରାଓ
ଏମ୍. ବି. ଇ.



ଇଣ୍ଡିଆନ୍ ରେଡ୍‌କ୍ରସ୍ ସମିତିର
ଗଞ୍ଜାମ ଶାଖାଦ୍ୱାରା ପ୍ରକାଶିତ

# ମେଲେରିଆ ପାଠ

## (ମେଲେରିଆ ତଥ୍ୟ ସଂଗ୍ରହ)




ରାଓବାହାଦୁର ଏମ୍. ଭି. ଆପ୍ପାରାଓ

ଏମ୍. ବି. ଇଙ୍କି ପ୍ରି ଲି


ପ୍ରଣୀତ

ଓଡ଼ିଶାର ଭୂତପୂର୍ବ ଲାଟ

ମହାମାନ୍ୟ

ସାର୍ ଚନ୍ଦୁଲାଲ୍ ମାଧବଲାଲ୍ ତ୍ରିବେଦୀ

କେ. ସି. ଏସ୍. ଆଇ., ସି. ଏସ୍. ଆଇ., ସି. ଆଇ. ଇ.,

ଓ. ବି. ଇ., ଆଇ. ସି. ଏସ୍. ମହୋଦୟଙ୍କ,

ମୁଖବନ୍ଧ ସହିତ




ଇଣ୍ଡିଆନ୍ ରେଡ଼କ୍ରସ୍ ସମିତିର

ଗଞ୍ଜାମ ଶାଖାଦ୍ୱାରା ପ୍ରକାଶିତ

# ସୂଚୀପତ୍ର


MAP OF INDIA
Showing distribution of malaria
Healthy areas or dry areas of low endemicity susceptible to epidemic outbreaks.
Dry areas particularly liable to severe epidemics
Moderate to high endemicity: child spleen rate over 10, but below 50%
Hyperendemic areas, mostly potential blackwater fever areas.
NEPAL
BHUTAN
BALUCHISTAN
BOMBAY
MADRAS
CEYLON
BAY OF BENGAL
ARABIAN SEA
The black areas are high areas above 5,000 feet except in Baluchistan outside the dotted lines, for which data is not available



His Excellency.
Sir C. M. Trivedi, K. C. S. I., C. S. I., C. I. E., O. B. E., I. C. S.
Governor of Orissa.

ଭାରତୀୟ ରେଡ଼କ୍ରସ ସଙ୍ଘର ଓଡ଼ିଶା ଶାଖା ସଭାପତି

# ଓଡ଼ିଶା ଲାଟ ମାନ୍ୟବର ସାର୍ ଚାନ୍ଦୁଲାଲ ତ୍ରିବେଦୀ

କେ. ସି. ଏସ୍. ଆଇ, ସି. ଏସ୍. ଆଇ, ସି. ଆଇ. ଇ, ଓ. ବି. ଇ.
ଆଇ. ସି. ଏସ୍.ଙ୍କ ଲିଖିତ

# ମୁଖବନ୍ଧ

ରାଓ ବାହାଦୁର ଏମ୍. ଭି. ଅପ୍ପାରାଓଙ୍କ ପ୍ରଣୀତ "ମେଲେରିଆ ପାଠ" ନାମକ ପୁସ୍ତିକାର ମୁଖବନ୍ଧ ଲେଖିବା ପାଇଁ ଗ୍ରନ୍ଥକର୍ତ୍ତାଙ୍କ ଅନୁରୋଧ ରକ୍ଷାକରିବାକୁ ଯାଇ ମୁଁ ବିଶେଷ ଆନନ୍ଦିତ। ମେଲେରିଆ ଦ୍ୱାରା ଓଡ଼ିଶାରେ ପ୍ରତିବର୍ଷ ବହୁତ ଲୋକ ମରନ୍ତି; ଏହା ଛଡ଼ା ହଜାର ହଜାର ଲୋକ ତଦ୍ଦ୍ୱାରା ଦୁର୍ବଳ ଓ ଅକର୍ମଣ୍ୟ ହୋଇ ପଡ଼ନ୍ତି। ଓଡ଼ିଶାବାସୀଙ୍କ ସ୍ୱାସ୍ଥ୍ୟର ଉନ୍ନତି ଦୃଷ୍ଟିରୁ ଏହି କଦର୍ଯ୍ୟ ଓ ଭୟାବହ ବ୍ୟାଧି, ତାର ଉତ୍ପତ୍ତିର କାରଣମାନ ଓ ତାହା ନିବାରଣର ଉପାୟ ସଂକ୍ରାନ୍ତରେ ଲୋକେ ଯେତେ ଅଧିକ ବିଷୟ ଜାଣିପାରିବେ ସେତେ ମଙ୍ଗଳ। ଏଣୁ ରାଓ ବାହାଦୁରଙ୍କ ଏହି କ୍ଷୁଦ୍ର ପୁସ୍ତକ ଖୁବ୍ ସମୟୋପଯୋଗୀ। ଏହା ଅତି ସରଳ, ସହଜବୋଧ ଭାଷାରେ ଲିଖିତ। ଲେଖାର ଶୈଳୀ ଖୁବ୍ ମନୋମୁଗ୍ଧକର ଏବଂ ଏହା ନାନାବିଧ ଚିତ୍ରସମ୍ବଳିତ ହୋଇଅଛି। ସାଧାରଣଙ୍କ ମଧ୍ୟରେ ଏହି ପୁସ୍ତକ ବିଶେଷ ପ୍ରସାର ପାଇବା ଉଚିତ ଓ ଲୋକେ ଏହାକୁ ମନୋଯୋଗ ସହକାରେ ପାଠକରି ବିଷୟଗୁଡ଼ିକ ହୃଦୟଙ୍ଗମ କରିବା ଉଚିତ। ମୋର ବିଶ୍ୱାସ, ଯେଉଁମାନେ ଏହି ପୁସ୍ତକ ପାଠ କରିବେ ସେମାନେ ଏଥିରୁ ଲବ୍ଧ ଶିକ୍ଷାକୁ ଯେ କେବଳ ଅନ୍ୟମାନଙ୍କ ମଧ୍ୟରେ ପ୍ରସାର କରିବାପାଇଁ ଚେଷ୍ଟା କରିବେ ତାହା ନୁହେଁ, ଏହି ରୋଗର ପ୍ରତିକାର ଓ ଚିକିତ୍ସା ସଂକ୍ରାନ୍ତରେ ଏହି ପୁସ୍ତକରେ ଦିଆଯାଇଥିବା ବ୍ୟବସ୍ଥାମାନ ମଧ୍ୟ ପାଳନ କରିବେ। ଏହି ଗ୍ରନ୍ଥ ପ୍ରଣୟନ କରି ରାଓ ବାହାଦୁର ସର୍ବସାଧାରଣଙ୍କର ବିଶେଷ ଉପକାର ସାଧନ କରିଅଛନ୍ତି। ତାଙ୍କର ଏହି

ସେବାଦ୍ୱାରା ଏହି ପ୍ରଦେଶରୁ ମେଲେରିଆର ପ୍ରାଦୁର୍ଭାବ କିୟତ୍ ପରିମାଣରେ ଅନ୍ତତଃ ହ୍ରାସ ହେଉ, ଏହା ମୋର କାମନା ।



ଓଡ଼ିଶା ପ୍ରାଦେଶିକ ମେଲେରିଆ ଅଫିସର

**ଡାକ୍ତର ଆର୍, ଜି, ପାଣିଗ୍ରାହୀ** ଏମ୍. ବି. ବି. ଏସ୍‌ଙ୍କ

## ଅଭିମତ

ଭାରତୀୟ ରେଡକ୍ରସ୍ ସଙ୍ଘ ଗଞ୍ଜାମ ଶାଖାର ଅବୈତନିକ କର୍ମକର୍ତ୍ତା ରାଓ 'ବାହାଦୁର ଏମ, ଭି, ଅପ୍ପାରାଓ, ଏମ, ବି, ଇ ଙ୍କ ସଙ୍କଳିତ ଓ ପ୍ରଣୀତ ମେଲେରିଆ ସମ୍ବନ୍ଧରେ ଇଂରେଜୀ ଭାଷାରେ ଲିଖିତ କ୍ଷୁଦ୍ର ପୁସ୍ତିକା ମୁଁ ବିଶେଷ ମନୋଯୋଗ ସହକାରେ ପାଠ କଲି । ଏହା ଶିକ୍ଷିତ ସାଧାରଣ, ସ୍କୁଲ ଶିକ୍ଷକ, ଛାତ୍ର ଓ ଅନ୍ୟାନ୍ୟ ସମାଜ ସଂସ୍କାରପ୍ରୟାସୀଙ୍କ ପାଇଁ ଅଭିପ୍ରେତ । ଏଥିର ବିଷୟବସ୍ତୁ ଶୃଙ୍ଖଳାର ସହିତ ସଜ୍ଜିତ ହୋଇଅଛି ଏବଂ ଚିତ୍ର ଗୁଡ଼ିକ ଅତି ଯତ୍ନ ସହକାରେ ଦିଆଯାଇଅଛି । ଏଥିରେ ସମ୍ବଳିତ ଚିତ୍ରଗୁଡ଼ିକ ମେଲେ-ରିଆର ଉତ୍ପତ୍ତି, ପ୍ରସାର, ବିଭିନ୍ନ ଲକ୍ଷଣ ଓ ନିବାରଣ ସଂକ୍ରାନ୍ତରେ ବିଶେଷ ଶିକ୍ଷାପ୍ରଦ ହୋଇଥିବାରୁ ପାଠକମାନଙ୍କ ଦୃଷ୍ଟି ନିଃସନ୍ଦେହରେ ଆକର୍ଷଣ କରିପାରିବ । ଏଣୁ ମେଲେରିଆ ବିରୁଦ୍ଧରେ ଏକ ଶିକ୍ଷାମୂଳକ ଅଭିଯାନ ଚଳାଇବା ଦିଗରେ ଏହା ବିଶେଷ ଭାବରେ ସାହାଯ୍ୟ କରିବ ।

ମେଲେରିଆ ସଂକ୍ରାନ୍ତରେ ଏହି ପୁସ୍ତିକାରେ ଅତ୍ୟନ୍ତ ଆଧୁନିକ କେତେକ ଜ୍ଞାତବ୍ୟ ବିଷୟ ସନ୍ନିବେଶିତ ହୋଇଥିବାରୁ ଏହା ପ୍ରଦେଶର ସର୍ବସାଧାରଣଙ୍କ ମଧ୍ୟରେ ଯେ ଅତ୍ୟନ୍ତ ଆବଶ୍ୟକ ଶିକ୍ଷା ପ୍ରସାର କରିପାରିବ, ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଏହି ଉପାଦେୟ ପୁସ୍ତକ ସାଧାରଣଙ୍କ ମଧ୍ୟରେ ପ୍ରକାଶ କରିବା ପାଇଁ ରାଓ ବାହାଦୂର ଏମ୍, ଭି, ଅପ୍ପାରାଓଙ୍କ ଉଦ୍ୟମକୁ ମୁଁ ବିଶେଷ ଧନ୍ୟବାଦ ଅର୍ପଣ କରୁଛି । ମୋର ଦୃଢ଼ ବିଶ୍ୱାସ ସର୍ବସାଧାରଣ ଏଥିଦ୍ୱାରା ବିଶେଷ ଉପକୃତହେବେ । ମୋର ଆନ୍ତରିକ କାମନା ଏହି ପୁସ୍ତକଖଣ୍ଡିକ ଶୀଘ୍ର ପ୍ରକାଶ କରାଯାଇ ସମସ୍ତ ଶିକ୍ଷାନୁଷ୍ଠାନକୁ ବିନାମୂଲ୍ୟରେ ଯୋଗାଇ ଦିଆଯାଉ ।

---

## ରାଓ ସାହେବ ଡାକ୍ତର ବି. ମିଶ୍ର

ଏମ୍. ବି. ବି. ଏସ୍.

ପ୍ରାଦେଶିକ କୁଷ୍ଠ ଓ ସ୍ୱାସ୍ଥ୍ୟ ପ୍ରଚାର ଅଫିସରଙ୍କ

## ଅଭିମତ

ରାଓ ବାହାଦୂର ଏମ, ଭି, ଅପ୍ପାରାଓ ଏମ୍, ବି. ଇ ମହୋଦୟ ମେଲେରିଆ ସମ୍ବନ୍ଧରେ ଖଣ୍ଡେ ବିଶେଷ ଉପାଦେୟ ପୁସ୍ତିକା ପ୍ରଣୟନ କରିଅଛନ୍ତି । ଏହି ପ୍ରଦେଶରେ ବହୁଳ ଭାବରେ ବ୍ୟାପୁଥିବା ମେଲେରିଆ ଜ୍ୱରର ଉତ୍ପତ୍ତିର କାରଣ କଣ, ତାହା କିପରି ବ୍ୟାପି ଯାଉଛି ଏବଂ ତାହାର ନିବାରଣ କିପରି କରାଯିବ ଏହିସବୁ ବିଷୟକୁ ନେଇ ଏହା ଲିଖିତ । ଏଥିରେ ଦିଆଯାଇଥିବା ବହୁବିଧ ରଙ୍ଗିନ ଛବି ଯୋଗୁଁ ଏହା ବିଶେଷ ମନୋମୁଗ୍ଧକର ହୋଇଅଛି ଏବଂ ଏହା ଶିକ୍ଷିତ ସାଧାରଣ, ସ୍କୁଲ ଶିକ୍ଷକ ଓ ଅନ୍ୟାନ୍ୟ ସମାଜ ସଂସ୍କାର-ପ୍ରୟାସୀଙ୍କ ପାଇଁ ବିଶେଷ ଉପାଦେୟ । ଏହି କ୍ଷୁଦ୍ର ଗ୍ରନ୍ଥ ପ୍ରଣୟନ ପାଇଁ ରାଓ ବାହାଦୂର ବିଶେଷ ଶ୍ରମ ସ୍ୱୀକାର କରିଅଛନ୍ତି । ମେଲେରିଆ ଦ୍ୱାରା ବର୍ଷ ବର୍ଷ ହେଲା ବହୁ ସଂଖ୍ୟକ ଲୋକଙ୍କ ମୂଲ୍ୟବାନ ଜୀବନ ଧୀର ଅଥଚ ନିଶ୍ଚିତ ଭାବରେ ନଷ୍ଟ ହେଉଅଛି । ଏହି

କୁପ୍ରଥ ବିରୁଦ୍ଧରେ ଅଭିଯାନ ଚଳାଇବା ପାଇଁ ଯେଉଁମାନେ ପ୍ରୟାସୀ ସେମାନଙ୍କ ଦ୍ୱାରା ଏହି ପୁସ୍ତକ ବିଶେଷଭାବେ ଆଦୃତ ହେବା ଉଚିତ । ଯଦି ଏହି ପୁସ୍ତକ ପ୍ରକାଶିତ ହୋଇ ସ୍କୁଲ୍ ଓ ଅନ୍ୟାନ୍ୟ ଶିକ୍ଷିତ ସାଧାରଣଙ୍କ ମଧ୍ୟରେ ପ୍ରସାର ଲାଭକରେ ତେବେ ଲେଖକ ଯେଉଁ ଉଦ୍ଦେଶ୍ୟରେ ଏତେ ଶ୍ରମ ସ୍ୱୀକାର କରିଅଛନ୍ତି ତାହା ସାର୍ଥକ ହେବ ।





RAO BAHADUR M. V. APPAROW, M. B. E.
*Honorary Secretary,*
INDIAN RED CROSS SOCIETY,
GANJAM BRANCH.
AUTHOR.

# ଭୂ ମି କା

ମତ୍ ପ୍ରଣୀତ 'କୁଷ୍ଠରୋଗ' ଓ 'ରାଜଯକ୍ଷ୍ମା' ପ୍ରଭୃତି ପୁସ୍ତକମାନ ସାଧାରଣଙ୍କ ପାଖରେ ଯେପରି ଆଦୃତ ହୋଇଅଛି, ଏହି ଧରଣର ପୁସ୍ତକମାନଙ୍କ ଉପାଦେୟତାର ଗୁରୁତ୍ୱ ଦୃଷ୍ଟିରୁ ସେପରି ଆଉ ଖଣ୍ଡିଏ ପୁସ୍ତକ ପ୍ରଣୟନ କରିବା ବାସନା ମନ ମଧ୍ୟରେ ବଳବତୀ ହେଲା । ଜୀବନରେ ସୁଯୋଗ ଗୋଟାଏ ବଡ଼ ଜିନିଷ । ସୁଯୋଗ ସମୟ-ବୃକ୍ଷର କୁସୁମ ସଦୃଶ । 'ଡେ଼ଲେଫୋସ୍ ସ୍ୱାନ୍' ମନ୍ଦିରର ଗୋଟାଏ କାନ୍ଥରେ ଲେଖାଅଛି, "ଆପଣା ସୁଯୋଗ ଆପେ ଜାଣି ରଖ" । ସୁତରାଂ ସୁଯୋଗ କେବେହେଁ ହରାଇବା ଉଚିତ ନୁହେ । କଣ ପୁଣି ଲେଖିବି ବୋଲି ଚିନ୍ତା କରିବା ବେଳେ ହଠାତ୍ ଗୋଟାଏ ଉଦ୍‌ବୋଧନ ମନମଧ୍ୟରେ ଉଦିତ ହେଲା । ଏହି ଜିଲ୍ଲା ତଥା ଏ ପ୍ରଦେଶର ଅନ୍ୟାନ୍ୟ ଜିଲ୍ଲାରେ ମେଲେରିଆ ଜ୍ୱରର ପ୍ରକୋପ ଖୁବ୍ ବଢ଼ିଛି । ବିଶେଷତଃ ଗତ ଦୁଇ ବର୍ଷ ମଧ୍ୟରେ ଏହା ଦ୍ୱାରା ହଜାର ହଜାର ଜୀବନ ନଷ୍ଟ ହୋଇଛି । ବର୍ତ୍ତମାନ ସୁଦ୍ଧା ଏହି ଅଞ୍ଚଳରେ ମେଲେରିଆ ବ୍ୟାଧି ବିଶେଷ କ୍ଷତି ଘଟାଉଅଛି । ସୁତରାଂ ଭାରତ ଭୂମିରୁ ବହୁ ସଂଖ୍ୟକ ଜୀବନ ନଷ୍ଟ କରୁଥିବା ଏହି ମେଲେରିଆ ବ୍ୟାଧି ସଂକ୍ରାନ୍ତରେ କିଛି ଲେଖିବା ପାଇଁ ବାସନା ମନମଧ୍ୟରେ ଜାଗ୍ରତ-ହେଲା । ମୋର ଏପରି କଳ୍ପନା ମୂଳରେ ଅନ୍ୟାନ୍ୟ କାରଣମାନ ନିହିତ ଅଛି । ଭାରତୀୟ ରେଡ଼କ୍ରସ ସଙ୍ଘ ଟେଙ୍କ୍ରାମ ଶାଖାର ଅବୈତନିକ ସମ୍ପାଦକ ଓ ଏହାର ଓଡ଼ିଶା ଶାଖାର କାର୍ଯ୍ୟକାରୀ କମିଟିର ଜଣେ ସଭ୍ୟ ଭାବରେ ମୁଁ ସଙ୍ଘ ସହିତ ସମ୍ପୃକ୍ତ । ରେଡ଼କ୍ରସ ସଙ୍ଘ ଯେଉଁ ସବୁ ଲୋକହିତକର କାର୍ଯ୍ୟମାନ ସମ୍ପାଦନ କରନ୍ତି ସେ ଦୃଷ୍ଟିରୁ ମେଲେରିଆ ସମ୍ବନ୍ଧରେ ଏହି ପୁସ୍ତକଟି ଲେଖିବା ଅତ୍ୟନ୍ତ ଆବଶ୍ୟକ ଏ ଧାରଣା ମୋର ଦୃଢ଼ହେଲା । ସମସ୍ତେ ଭଲଭାବରେ ଜାଣନ୍ତି ଯେ, ରେଡ଼କ୍ରସ ଅନୁଷ୍ଠାନ ବିଭିନ୍ନ ଦେଶରେ ବିଭିନ୍ନ ଉପାୟରେ ମେଲେରିଆ ନିବାରଣର ବ୍ୟବସ୍ଥାମାନ କରୁଛନ୍ତି । ସେହି ବ୍ୟବସ୍ଥାମାନଙ୍କ ମଧ୍ୟରୁ 'ଶିକ୍ଷା'

ଗୋଟିଏ ବ୍ୟବସ୍ଥା । ଆଧୁନିକ ଯୁଗରେ ବିଜ୍ଞାନର ଅଗ୍ରଗତି ପ୍ରତି ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରି ତାହାକୁ ଜୀବନର ଦୈନନ୍ଦିନ ସମସ୍ୟା ସମାଧାନରେ ପ୍ରୟୋଗ କରିବା ବିଷୟରେ ରେଡ଼କ୍ରସ ଅନୁଷ୍ଠାନ ବିଶେଷ ଯତ୍ନଶୀଳ । ପ୍ରକୃତରେ ଜେନିଭାସ୍ଥିତ କେନ୍ଦ୍ର ରେଡ଼କ୍ରସ ସଙ୍ଘ ମେଲେରିଆ ପ୍ରମୁଖ ସଂକ୍ରାମକ ରୋଗ ନିବାରଣ ବ୍ୟବସ୍ଥାମାନଙ୍କ ସହିତ ଘନିଷ୍ଠଭାବରେ ସଂପୃକ୍ତ ।

ମେଲେରିଆର ଉତ୍ପତ୍ତି ତଥା ବ୍ୟାପକତା ସଂକ୍ରାନ୍ତରେ ବର୍ତ୍ତମାନ ଜନସାଧାରଣଙ୍କ ମଧ୍ୟରେ କେତେକ ଜଟିଳ ଧାରଣା ରହିଛି । 'ଇଟାଲି' 'ଅଲ୍‌ଜିରିଆ' 'ପାନାମା' 'ଇସ୍‌ମେଲିଆ' ପ୍ରଭୃତି ପାଶ୍ଚାତ୍ୟ ଦେଶ ବୈଜ୍ଞାନିକ ବ୍ୟବସ୍ଥା ଗ୍ରହଣ କରିବା ଦ୍ୱାରା ଏହି ଅଳ୍ପକାଳ ମଧ୍ୟରେ ମେଲେରିଆରୁ ମୁକ୍ତ ପାଇଅଛନ୍ତି । ମେଲେରିଆ ସଂକ୍ରମଣ ଶକ୍ତି କଥା ୧୮୯୭ ମସିହାରେ କଲିକତାର ଡ଼ାକ୍ତର 'ରୋନାଲ୍ଡ଼ରସ' ସର୍ବ ପ୍ରଥମେ ଆବିଷ୍କାର କରିଥିଲେ ହେଁ ଦୁଃଖର କଥା ମେଲେରିଆ ଅଦ୍ୟାବଧି ଭାରତରେ ଉତ୍କଟ ଦୁଃଖ ଦୁର୍ଦ୍ଦଶା ଓ କ୍ଷତି ଘଟାଉଛି । ଏହି ସଂକ୍ରାମକ ବ୍ୟାଧିର ନିବାରଣ ଦିଗରେ ଏପର୍ଯ୍ୟନ୍ତ କୌଣସି ଗୁରୁତର ଉଦ୍ୟମ ହୋଇନାହିଁ ।

ମେଲେରିଆ ନିରୋଧପାଇଁ କାର୍ଯ୍ୟକରିବା ନିମନ୍ତେ ମେଲେରିଆ ଉତ୍ପତ୍ତିର କାରଣ, ତାହାର ନିବାରଣ ଏବଂ ସେଥିରୁ ମୁକ୍ତ ଲାଭ କରିବା ବିଷୟରେ ଲୋକସାଧାରଣଙ୍କ ମଧ୍ୟରେ ଏକ ଶୃଙ୍ଖଳିତ ପ୍ରଚାର ଓ ଶିକ୍ଷାର ଆବଶ୍ୟକତା ସବୁଠାରୁ ବେଶୀ ପ୍ରୟୋଜନ । ମେଲେରିଆ ପ୍ରତିଷେଧକ ପ୍ରଚାରର ପ୍ରଣାଳୀ ସମ୍ବନ୍ଧରେ ଏକ ସାଧାରଣ ବ୍ୟାବହାରିକ ଜ୍ଞାନ ଓ ବୁଦ୍ଧିର କାର୍ଯ୍ୟ ହେଉଛି ମେଲେରିଆ ସମସ୍ୟାରେ ସ୍କୁଲ ଶିକ୍ଷକ, ବାଳକ ବାଳିକା ଓ ସର୍ବସାଧାରଣଙ୍କୁ ଶିକ୍ଷା ଦେବା । ଏ ଦୃଷ୍ଟିରୁ ମେଲେରିଆ ଓ ସାମାଜିକ ସେବାର ମାହାତ୍ମ୍ୟ ସଂକ୍ରାନ୍ତରେ

ଇଂରେଜୀ ଓ ଅନ୍ୟାନ୍ୟ ଦେଶୀୟ ଭାଷାରେ ଖଣ୍ଡେ ଉପଯୁକ୍ତ ପୁସ୍ତକର ଏକାନ୍ତ ଅବଶ୍ୟକ । ଲୋକସାଧାରଣଙ୍କ ମନରେ ସ୍ୱାସ୍ଥ୍ୟ-ରକ୍ଷା ବିଷୟରେ କିପରି ଗୋଟାଏ ଅନ୍ତଃବୋଧ ଉଦ୍ଦୀପିତ ହେବ ଏବଂ ମେଲେରିଆ ସମ୍ବନ୍ଧରେ ସେମାନେ କିପରି ଆବଶ୍ୟକୀୟ ଶିକ୍ଷା ଲାଭ କରିପାରିବେ ସେଦୃଷ୍ଟିରୁ ଗୋଟିଏ ସରଳ ସହଜ-ବୋଧ ପୁସ୍ତକ ଲେଖାହେବା ଦରକାର । ଏହି ଧରଣର ବହି ବିଦ୍ୟାଳୟମାନଙ୍କରେ ପ୍ରଚଳନ କରାଗଲେ ସ୍କୁଲ ଶିକ୍ଷକମାନେ ଏଥିରେ ଦିଆଯାଇଥିବା ବିଷୟମାନ ହୃଦୟଙ୍ଗମ କରି ଛାତ୍ରମାନଙ୍କୁ ତାହା ଶିକ୍ଷା ଦେବେ । ଏହି ଧରଣର ବହି ସମାଜସେବକ ମାନଙ୍କ ପକ୍ଷରେ ବିଶେଷ ଉପାଦେୟ । କାରଣ ସେମାନେ ଏହା ପାଠକରି ଗାଁ ଗହଳର ଜନସାଧାରଣଙ୍କୁ ବ୍ୟକ୍ତିଗତଭାବେ ଶିକ୍ଷା ଦେଇପାରିବେ । ଅଶିକ୍ଷିତ ଲୋକସାଧାରଣ ମଧ୍ୟ ଏ ବହିରେ ଦିଆ ଯାଇଥିବା ବିଷୟଗୁଡ଼ିକ ସ୍କୁଲରେ ପଢୁଥିବା ସେମାନଙ୍କର ନିଜ ନିଜର ପିଲାମାନଙ୍କଠାରୁ ଓ ଗ୍ରାମର ସମାଜ ସେବକମାନଙ୍କ ଦ୍ୱାରାରେ ଜାଣିପାରିବେ । ଯେ କୌଣସି ସ୍ୱାସ୍ଥ୍ୟ-ଅଭିଯାନର ସଫଳତାପାଇଁ 'ଲୋକସାଧାରଣଙ୍କୁ ଶିକ୍ଷିତ କରାଇବା ପ୍ରଥମେ ଆବଶ୍ୟକ ବୋଲି ଯେପରି କେହି ଭୁଲି ନଯାନ୍ତି । ରୋଗ ସଂକ୍ରମଣ ନିରୋଧ ବ୍ୟବସ୍ଥା ପାଇଁ ଏହା ଅତି ଆବଶ୍ୟକ । ଅଧିକନ୍ତୁ ମଧ୍ୟ ମେଲେରିଆ ପ୍ରତିଷେଧକ ଯୋଜନାର ସଫଳତା ଲୋକ-ସାଧାରଣଙ୍କ ସହଯୋଗ ଓ ବୋଧ ଶକ୍ତି ଉପରେ ନିର୍ଭର କରେ । ଲୋକେ ଗରିବ କିମ୍ବା ସେମାନଙ୍କର ଆର୍ଥିକ ଶକ୍ତି ସ୍ୱଚ୍ଛଳ ନଥିଲେ ସ୍ୱେଚ୍ଛାକୃତ ପରିଶ୍ରମ ଦ୍ୱାରା ସେମାନେ ତାହା ଶୋଧନ କରିଦେଇ ପାରନ୍ତି । ମଶା ଡିମ୍ବ ଧ୍ୱଂସ କରିବା ବ୍ୟବସ୍ଥା ଯଦି ସ୍ୱେଚ୍ଛାକୃତ ଉଦ୍ୟମ ଦ୍ୱାରା ଉପଯୁକ୍ତ ଭାବେ ପ୍ରତ୍ୟେକ ଗ୍ରାମରେ ପ୍ରଚଳିତ ହୁଏ ତେବେ ଗ୍ରାମବାସୀ ଓ ଗ୍ରାମମାନଙ୍କର ଅବସ୍ଥାର ଅନେକ ପରିବର୍ତ୍ତନ ହେବ । ସୁତରାଂ ସର୍ବସାଧାରଣଙ୍କୁ ମେଲେରିଆ, ତାହାର ପ୍ରତିକ୍ରିୟା ଓ

ବହୃତ ଚିକିତ୍ସା ସଂକ୍ରାନ୍ତରେ ଶିକ୍ଷାଦେବା ଗୋଟାଏ ପ୍ରଧାନ କର୍ତ୍ତବ୍ୟ । ଏଥିପାଇଁ ପ୍ରୟୋଜନୀୟ ପୁସ୍ତକରେ ଜନସାଧାରଣଙ୍କୁ ବୁଝାଇବା ପାଇଁ ଓ ସେମାନଙ୍କ ସହଯୋଗ ଲାଭ କରିବାପାଇଁ ଚିତ୍ର ଓ ଉଦାହରଣମାନ ରହିବା ଉଚିତ । ଏହା ଦ୍ୱାରା ସନ୍ତୋଷଜନକ ଭାବରେ ଏ ସମସ୍ୟାର ସମାଧାନ ହୋଇ ପାରିବ ।

ଏ ଦେଶର ଦେଶପ୍ରେମିକମାନେ ଓ ମଫସଲର ନେତାମାନେ ଯଦି ସେମାନଙ୍କର କଣ କରିବା ଉଚିତ ଏହା ବୁଝନ୍ତି ଓ ନିଜ ନିଜର ଜ୍ଞାନକୁ ବାସ୍ତବ କାର୍ଯ୍ୟକ୍ଷେତ୍ରରେ ଲଗାନ୍ତି ତାହାହେଲେ ଭାରତ ବିଶେଷତଃ ଓଡ଼ିଶାରୁ ମେଲେରିଆର ପ୍ରାଦୁର୍ଭାବ ଅନେକାଂଶରେ କମିଯିବ ! କି ଉଦ୍ଦେଶ୍ୟରେ ପ୍ରଣୋଦିତ ହୋଇ ମୁଁ ଏହି ପୁସ୍ତକଟି ସଙ୍କଳନ ତଥା ପ୍ରଣୟନ ପାଇଁ ପ୍ରବୃତ୍ତ ହେଲି ତାହା ଉପରେ କୁହାଯାଇ ଅଛି । ମୁଁ ମେଲେରିଆ ବିଶେଷଜ୍ଞ ନୁହେଁ, କେବଳ ଜଣେ ସ୍ୱାସ୍ଥ୍ୟବାଦୀ । ଏଥିରେ ସମ୍ବଳିତ ପରିକଳ୍ପନା ଗୁଡ଼ିକ ମୋର ନିଜର ମୌଳିକ ପରିକଳ୍ପନା ନୁହେଁ, ମାତ୍ର ମେଲେରିଆ ସଂକ୍ରାନ୍ତରେ ଲିଖିତ ମୂଲ୍ୟବାନ ପୁସ୍ତକମାନଙ୍କରୁ ସାଧାରଣଙ୍କ ଉପକାରାର୍ଥ ସଂଗୃହୀତ ହୋଇଅଛି । ଶିକ୍ଷକ, ସ୍କୁଲଛାତ୍ର ଓ ସର୍ବସାଧାରଣ ତଥା ସମାଜ ସେବୀମାନଙ୍କପାଇଁ ଏହା ମୁଖ୍ୟତଃ ଉଦ୍ଦିଷ୍ଟ । ଏହି ପୁସ୍ତକ ସେମାନଙ୍କ ବ୍ୟବହାରରେ ଲାଗିବାଦ୍ୱାରା ସେମାନେ କିଛି ମାତ୍ରାରେ ଉପକୃତ ହେଲେ ମୋର ଉଦ୍ଦେଶ୍ୟ ବିଶେଷଭାବେ ସାଧିତ ହୋଇ ପାରିବ ।

ଏହି ତଳଲିଖିତ ବ୍ୟକ୍ତି ବିଶେଷ ତଥା ଅନୁଷ୍ଠାନଙ୍କ ଠାରେ ମୁଁ ବିଶେଷଭାବେ ଋଣୀ । କାରଣ ଏଥିରୁ ମୁଁ ବହୁ ମୌଳିକ ବିଷୟ ନେଇ ମୋର ପୁସ୍ତକ ସଙ୍କଳନ କରିଛି । ଏମାନଙ୍କଠାରେ ମୁଁ ବିଶେଷ କୃତଜ୍ଞତା-ପାଶରେ ଆବଦ୍ଧ । ଯେଉଁ ମାନ୍ୟଗଣ୍ୟ ବ୍ୟକ୍ତି ବିଶେଷ, ଅଫିସର ଓ ସରକାରୀ ଅନୁଷ୍ଠାନମାନ ମୋତେ

ବ୍ଲକ୍ ଇତ୍ୟାଦି ଯୋଗାଇଛନ୍ତି ବା ସେମାନଙ୍କ ପୁସ୍ତକରେ ଦିଆ ଯାଇଥିବା ଛବିର ବ୍ଲକ ଉତାରିବା ପାଇଁ ସ୍ୱୀକୃତି ଦେଇଅଛନ୍ତି ସେମାନଙ୍କୁ ମୁଁ ଧନ୍ୟବାଦ ଜଣାଉଅଛି ।

ଏହି ପୁସ୍ତକପାଇଁ ୫ ଓ ୨୫ ନମ୍ବର ସ୍ୱାସ୍ଥ୍ୟ ବୁଲେଟିନରୁ କେତେକ ଅଂଶ ଗ୍ରହଣ କରିବା ନିମନ୍ତେ ଭାରତ ସରକାର ଅନୁମତି ଦେଇଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଅଛି ।"

ସର୍ବଶେଷରେ ବ୍ରହ୍ମପୁରର ଓକିଲ ଶ୍ରୀ ସୂର୍ଯ୍ୟନାରାୟଣ ଆଗ୍ରୁଯି ବି. ଏ., ବି. ଏଲ୍ ଅପଣାର ବହୁମୂଲ୍ୟ ସମୟ ବ୍ୟୟ କରି ମୋର ଗ୍ରନ୍ଥକୁ ଓଡ଼ିଆରେ ଭାଷାନ୍ତରିତ କରିଦେଇ ଥିବାରୁ ମୁଁ ତାଙ୍କଠାରେ ବିଶେଷ ଭାବରେ କୃତଜ୍ଞ ।



# ମେଲେରିଆପାଠ

## (୧) ମେଲେରିଆର ଇତିହାସ

ଅତି ପ୍ରାଚୀନ କାଳରୁ ମେଲେରିଆ ଜ୍ୱର ଗୋଟିଏ ସ୍ୱତନ୍ତ୍ର ବ୍ୟାଧି ରୂପେ ପରିଚିତ । ମେଲେରିଆ ସହିତ ମଶାମାନଙ୍କର ଯେ ଘନିଷ୍ଠ ସମ୍ପର୍କ ଅଛି ଏହା ଗୋଟିଏ ଆଧୁନିକ ଯୁଗର କଳ୍ପନା ବୋଲି ଭାବିବା କେବଳ ଭ୍ରମ । ପଞ୍ଚମ ଶତାବ୍ଦୀର ଭିଷକ୍ ବିଶାରଦ ସୁଶ୍ରୁତ ମଶା କାମୁଡ଼ା ଜ୍ୱରର ଗୋଟିଏ କାରଣ ବୋଲି ନିରୂପଣ କରିଅଛନ୍ତି । ଜ୍ୱର ସହିତ ମଶାର ସମ୍ବନ୍ଧ ଅଛି ବୋଲି ଅତି ପ୍ରାଚୀନ କାଳରୁ ଅଫ୍ରିକା, ମାଳୟ ଓ ଅନ୍ୟାନ୍ୟ ମେଲେରିଆ ପ୍ରଧାନ ଦେଶର ଲୋକେ ସ୍ୱୀକାର କରନ୍ତି ।

'ପେରୁ'ର ବଡ଼ଲାଟଙ୍କ ପତ୍ନୀ 'କାଉଣ୍ଟେସ୍ ଅଫ୍ ଚିଂକୋନା' ୧୬୩୮ ମସିହାରେ 'ଲିମା' ଠାରେ ଜ୍ୱରାକ୍ରାନ୍ତ ହେବାରୁ 'କୁଇନା' ଛେଲି ଔଷଧ ସ୍ୱରୂପ ବ୍ୟବହାର କରି ରୋଗରୁ ମୁକ୍ତ ପାଇଥିଲେ । ଏହି ଘଟଣାର ବହୁଦିନ ପୂର୍ବରୁ ଦକ୍ଷିଣ ଆମେରିକାର ଆଦିମ ଅଧିବାସୀମାନେ ଏହି ଛେଲିର ବ୍ୟବହାର ଜାଣିଥିଲେ । ଫରାସୀ ସମ୍ରାଟ ଚତୁର୍ଦ୍ଦଶ 'ଲୁଇ' ଜ୍ୱରାକ୍ରାନ୍ତ ହୋଇ ଥିବାବେଳେ ତତ୍କାଳୀନ ଫରାସୀ ରାଜଚିକିତ୍ସକ 'କାର୍ଡିନେଲ ଡି ଲୁଗୋ' ଏହି ଔଷଧ ବିଦେଶରୁ ଆମଦାନୀ କରିଥିଲେ । ଏହି ଛେଲିର ଉପକାରିତା ସମ୍ବନ୍ଧରେ ଦୀର୍ଘକାଳ ଅଭିଜ୍ଞତା ଥିବା ଜଣେ ଜେସୁଟ ଧର୍ମଯାଜକ ଉକ୍ତ ରାଜ ଚିକିତ୍ସକଙ୍କ ନିକଟକୁ 'କୁଇନା' ଛେଲି ପଠାଇଥିଲେ । ସେହି ଦିନୁ ଏହି ଔଷଧ ମେଲେରିଆ ଜ୍ୱରର ଏକମାତ୍ର ଅମୋଘ ଔଷଧରୂପେ ପରିଚିତ ହେଲା । ଉକ୍ତ 'କାଉଣ୍ଟେସ୍' ଓ ତାହାଙ୍କ ଚିହ୍ନିତ ଚିକିତ୍ସକ ୧୬୪୦ ମସିହାରେ ଏହି ଛେଲିକୁ ସ୍ପେନ ଦେଶକୁ ବିଶେଷ ପରିମାଣରେ ମଗାଇଥିଲେ । ପରେ ଇଉରୋପ ମହାଦେଶର ଅନ୍ୟାନ୍ୟ ଅଞ୍ଚଳରେ ଏହାର ପ୍ରସାର ବଢ଼ିଲା । ଏହି ଔଷଧ 'କାଉଣ୍ଟେସ୍ ଚୂର୍ଣ୍ଣ' 'ଜେସୁଟ ଚୂର୍ଣ୍ଣ', ବା 'କାର୍ଡିନାଲ ଛେଲି'

ପ୍ରଭୃତି ବିଭିନ୍ନ ନାମରେ ଅଭିହିତ ହେଉଥିଲା । ଖ୍ରୀଷ୍ଟାବ୍ଦ ୧୮୨୦ ମସିହା ପରେ ଦୁଇଜଣ ଫରାସୀ ରସାୟନ ବିଶେଷଜ୍ଞ 'ପେଲ୍‌ଟିରେ' (Pelletier) ଓ 'ଗେଭେନ୍‌ଟେନ୍' (Gaventen) ସିଙ୍କୋନା ବୃକ୍ଷର ବଲ୍କଲ ଦେହରୁ ଯାଗାସ୍ନ କୁଇନାଇନ ଆହରଣ କରିଥିଲେ । ଖ୍ରୀଷ୍ଟାବ୍ଦ ୧୭୫୩ ମସିହାରେ ଲାଟପତ୍ନୀଙ୍କ ନାମକୁ ଚିର ସ୍ମରଣୀୟ କରିବାପାଇଁ 'ଲିନେଇଅସ୍' ଏହି ଗଛର ନାମ ସିଙ୍କୋନା ଦେଇଥିଲେ ।

ଖ୍ରୀଷ୍ଟାବ୍ଦ ୧୮୪୭ ମସିହାରେ କୁଇନାଇନ୍ ସଲ୍‌ଫେଟ୍ ସାହାଯ୍ୟରେ ମେଲେରିଆ ଜ୍ୱରର ଚିକିତ୍ସା ଭାରତରେ ପ୍ରଚଳିତ ହେଲା । ମେଲେରିଆ ଓ ଅତିସାର ନିବାରଣ ସଂକ୍ରାନ୍ତରେ ଡାକ୍ତର 'ହେମ୍ବାର' ଯେଉଁ ପୁସ୍ତିକା ଲେଖିଥିଲେ ତଦ୍ଵାରା ପ୍ରଭାବିତ ହୋଇ କଲିକତା ମେଡ଼ିକାଲ୍ ବୋର୍ଡ଼ ସରକାରୀ ସୂତ୍ରରେ କୁଇନାଇନ ଚିକିତ୍ସା ସମ୍ବନ୍ଧେ ଗବେଷଣା କରିଥିଲେ । ମେଡ଼ିକାଲ୍ ବୋର୍ଡ଼ର ନିର୍ଦ୍ଦେଶ ଅନୁଯାୟୀ ଏହି ଔଷଧର ବ୍ୟବହାର ଚିକିତ୍ସା ପ୍ରଣାଳୀର ଗୋଟିଏ ନିୟମିତ ଅଙ୍ଗରୂପେ ପ୍ରତିଷ୍ଠିତ ହେଲା ।

ଦକ୍ଷିଣ ଆମେରିକାରୁ ସିଙ୍କୋନା ମଞ୍ଜି ଆଣି 'କ୍ଲେମେଣ୍ଟସ୍ ମାର୍କହାମ୍' (Clements Markham) ନାମକ ଜଣେ ୟୁରୋପୀୟ ଭାରତ ଓ ସିଂହଳ ଦ୍ୱୀପରେ ୧୮୬୦ ମସିହାରେ ସିଙ୍କୋନା ବୃକ୍ଷର ଚାଷ ପ୍ରଥମେ ଆରମ୍ଭ କରିଥିଲେ । କିଛିକାଳ ଏହି ବ୍ୟବସାୟରେ ଉନ୍ନତି ହୋଇଥିଲା । କିନ୍ତୁ ୧୮୮୦ ଠାରୁ ୧୮୯୦ ମସିହା ପର୍ଯ୍ୟନ୍ତ ଅତିରିକ୍ତ ଉତ୍ପାଦନ ହେତୁ ଏହାର ମୂଲ୍ୟ ବିଶେଷ-ଭାବେ କମିଗଲା ଏବଂ ତଦ୍ଵାରା ଏହି ବ୍ୟବସାୟର ଅବନତି ଘଟିଲା । ଭାରତରେ ଏହି ବ୍ୟବସାୟ ପ୍ରବର୍ତ୍ତନ ହେବାର ବହୁଦିନ ଆଗରୁ ଜାଭା ଦ୍ୱୀପରେ ସିଙ୍କୋନା ଚାଷର ବିଶେଷ ପ୍ରଚଳନ ଥିଲା । କିନ୍ତୁ ଜାଭାର ଚତୁର ବ୍ୟବସାୟୀମାନେ ବ୍ୟବସାୟଗତ ଉତ୍ଥାନ ପତନରୁ

ସିଂକୋନା ବୃକ୍ଷକୁ ବଞ୍ଚାଇ ରଖି ପାରିଥିଲେ । ଏଭଳି ଚେଷ୍ଟା ଭାରତୀୟ ବ୍ୟବସାୟୀଙ୍କ ପକ୍ଷରେ ସମ୍ଭବ ହୋଇପାରି ନଥିଲା । ବର୍ତ୍ତମାନ ପୃଥିବୀର ଶତକଡ଼ା ପ୍ରାୟ ୯୭ ଭାଗ କୁଇନାଇନ କେବଳ ଜାଭା ଦ୍ୱୀପ ଯୋଗାଇ ଥାଏ । ସୁଖର କଥା ଏବେ ଏହି ବ୍ୟବସାୟ ଭାରତସରକାରଙ୍କ ଦୃଷ୍ଟି ଆକର୍ଷଣ କରିଛି । ଭାରତରେ ସିଙ୍କୋନା ଉତ୍ପାଦନ ସମସ୍ୟାର ଆବଶ୍ୟକୀୟ ଅନୁସନ୍ଧାନ କରିବାପାଇଁ ଭାରତସରକାର ବିଶେଷ ଅଗ୍ରହାନ୍ୱିତ । ଏହି ବ୍ୟବସାୟର ପୁନରୁଦ୍ଧାର କରି ଭାରତକୁ ଏ ଦିଗରେ ଆତ୍ମନିର୍ଭରଶୀଳ କରିବାପାଇଁ ସରକାର ସଚେଷ୍ଟ ।

୧୮୪୭ ଓ ୧୮୯୫ ମସିହା ମଧ୍ୟରେ 'ମେକେଲ୍' (**Meckel**) ଲଭରନ୍ (**Laveran**) 'ରୋମାନୋସ୍କି' (**Romanowsky**) 'ମାନସାନ୍' (**Manson**) ପ୍ରମୁଖ ପ୍ରସିଦ୍ଧ ଡାକ୍ତରଗଣ ମଶା ଓ ମେଲେରିଆ ମଧ୍ୟରେ ସଂପର୍କ ଅଛି ବୋଲି ନିର୍ଣ୍ଣୟ କରି ଅଛନ୍ତି । ୧୮୯୫ ଠାରୁ ୧୮୯୮ ମସିହା ମଧ୍ୟରେ ପ୍ରସିଦ୍ଧ ଡାକ୍ତର ମେଜର 'ରସ୍' (**Major Ross**) ଏ ଦିଗରେ ନାନାବିଧ ଗବେଷଣା ଓ ଅନୁସନ୍ଧାନ କରିଥିଲେ । ପରିଶେଷରେ ୧୮୯୮ ମସିହାରେ ତାଙ୍କର ଅଧ୍ୟବସାୟ ସାଫଲ୍ୟ-ମଣ୍ଡିତ ହେଲା । କ୍ରମାଗତ ବିଫଳ ଚେଷ୍ଟା ଓ ନୈରାଶ୍ୟ ପରେ ସେ ମେଲେରିଆ ଜ୍ୱରର ବିଭିନ୍ନ ଅବସ୍ଥା ଓ 'ଆନୋଫିଲିସ୍' (**Anopheles**) ଜାତୀୟ ମଶା ଦ୍ୱାରା କିପରି ମେଲେରିଆ ସଂକ୍ରମିତ ହୁଏ ତାହା ସଫଳତାର ସହିତ ଦର୍ଶାଇ ପାରିଥିଲେ ।

'ସାର୍ ରୋନାଲ୍ଡ୍ ରସ୍' କଲିକତାଠାରେ ନାନାବିଧ ଗବେଷଣା କରି ସଂକ୍ରାମକ 'ଆନୋଫିଲିସ' ମଶା କାମୁଡ଼ିବା ଦ୍ୱାରା ମେଲେରିଆ କିପରି ମନୁଷ୍ୟମାନଙ୍କ ଶରୀରକୁ ସଞ୍ଚରଣ କରେ ସେ ସଂକ୍ରାନ୍ତରେ ଯେଉଁ ଗୁରୁତ୍ୱ ପୂର୍ଣ୍ଣ ଆବିଷ୍କାର କରିଥିଲେ ତାହାର ସବିଶେଷ ବିବରଣୀ ୧ ଠାରୁ ୭୧ ଚିତ୍ରରେ ଦର୍ଶାଇ ଦିଆ ଯାଇଅଛି ।

'ଆନୋଫିଲିସ୍' ଜାତୀୟ ମଶା ଦ୍ୱାରା ମେଲେରିଆ କିପରି ବ୍ୟାପକଭାବେ ସଞ୍ଚରଣ କରେ ତାହାକୁ 'ରସ୍' ସାହେବ ପ୍ରମାଣିତ କରିବାର ପ୍ରାୟ ୪୦ ବର୍ଷ ହେଲାଣି । ସେହିଦିନରୁ ମେଲେରିଆର ପ୍ରତିକାର ଦିଗରେ ଧୀର ଅଥଚ କ୍ରମାଗତ ଭାବେ ଉନ୍ନତିକର ବ୍ୟବସ୍ଥାମାନ ହୋଇଛି । ଯେ କୌଣସି ସୁସଂଗଠିତ ସଂପ୍ରଦାୟକୁ ମେଲେରିଆ ଆକ୍ରମଣରୁ ସମ୍ପୂର୍ଣ୍ଣରୂପେ ମୁକ୍ତ ଲଭିବା ଦିଗରେ ନିର୍ଭର ପ୍ରତିଶ୍ରୁତି ଯେ ଦିଆଯାଇ ପାରିବ ଏହା ନିର୍ଧାର୍ଯ୍ୟଭାବେ ବର୍ତ୍ତମାନ କୁହାଯାଇପାରେ । ଆଜି ଯଦି ଏହାର ପ୍ରତିକାର କରିବାକୁ କୌଣସି ଅଂଶରେ ଲୋକେ ଅକ୍ଷମ ହୁଅନ୍ତି ତେବେ ତାହା ସେ ଅଞ୍ଚଳର ଲୋକଙ୍କ ଔଦାସୀନ୍ୟ ଯୋଗୁଁ ହେଉଛି ବୋଲି ବୁଝିବାକୁ ହେବ ।

ଭାରତୀୟ ଚିକିତ୍ସା ବିଭାଗର ପ୍ରସିଦ୍ଧ ଡାକ୍ତର ମେଜର 'ରୋନାଲ୍ଡ ରସ୍' ମେଲେରିଆଦ୍ୱାରା ଘଟୁଥିବା କ୍ଷତି ବିଷୟ




ଚିନ୍ତାକରି ବିଶେଷଭାବରେ ମର୍ମାହତ ହେଲେ ଓ ତାହାର ପ୍ରତିକାର ଆବିଷ୍କାର କରିବାପାଇଁ ବଦ୍ଧପରିକର ହେଲେ ।

'ମେଜର ରସ୍' କେତେ ଗୁଡ଼ିଏ ମଶା ଯୋଗି ସେମାନଙ୍କୁ ବୈଜ୍ଞାନିକ ନିୟମ ଅନୁସାରେ ପରୀକ୍ଷା କଲେ । ସେହି ମଶାମାନଙ୍କ



(ଚିତ୍ର ୭)

ଦେହରେ ମେଲେରିଆ ସଂକ୍ରମଣ କରୁଥିବା ଜୀବାଣୁର କୌଣସି ସନ୍ଧାନ ପାଇ ପାରିଲେ ନାହିଁ । କେବଳ ଧୂସର ବର୍ଣ୍ଣର ଓ ଚିତ୍ରିତଅଙ୍ଗ ଏହି ଦୁଇ ଜାତୀୟ ମଶା ଦେଖିଥିଲେ ।



(ଚିତ୍ର ୮)

ସେ କେତୋଟି ମଶା ସଂଗ୍ରହ କରିଥିଲେ ଓ ସେମାନେ ଯେପରି ତାଙ୍କୁ କାମୁଡ଼ିବେ ସେଥିପାଇଁ ବ୍ୟବସ୍ଥା କରିଥିଲେ । କିନ୍ତୁ ତାଙ୍କର ସେ ଚେଷ୍ଟା ବିଫଳହେଲା । ସମ୍ଭବତଃ ଭୟରେ ବନ୍ଦୀ ମଶାମାନେ 'ରସ' ସାହେବଙ୍କ ସହିତ ସହଯୋଗ କରିବାପାଇଁ ଅମଙ୍ଗ ହେଲେ ।



(ଚିତ୍ର ୧)

ଗୋଟିଏ କ୍ଷୁଦ୍ର, ଆସ୍ଥୃତନ ବିଶିଷ୍ଟ ଗବେଷଣା ପ୍ରକୋଷ୍ଠରେ ସେ ମେଲେରିଆର ବାହକ କିଏ ସେ ବିଷୟରେ ଗବେଷଣା ଆରମ୍ଭ କରି-ଥିଲେ । ଏହିପରି ୪ ବର୍ଷଯାଏ ଗବେଷଣା ଚାଲିଲା । ପରେ ମଶାମାନଙ୍କ ପ୍ରତି ତାଙ୍କର ସନ୍ଦେହ ଜାତହେଲା ।



(ଚିତ୍ର ୨)

# Fig. 61

PLAN OF A MOSQUITO PROOF BUILDING.




C.C. DWARF WALLS

WIRE CABLE SPRING DOOR

2'-6" WIDE SCREENED VESTIBULE

VERANDA

CLOSET 6'10"×4'6"

BATH 6'10"×6'

DRESSING ROOM 8'×6'10"

DRESSING ROOM 8×6'10"

BATH 6'×6'10"

CLOSET 4'6"×6'10"

CLOSET 4'6"×6'0"

BATH 6×6'10"

DRESSING ROOM 8×6'10"

BED ROOM 15×12'

BED ROOM 15×12'

BED ROOM 15×12'

SKY LIGHT 6×5

PASSAGE

VERANDAH

VERANDAH

6'-0"

4' WIDE SCREENED VESTIBULE

DWARF WALL 6" HIGH

8'-0"

PANTRY 13×6'10

VERANDA

67-6

C.C. DWARF WALL 6" WIDE 1' HIGH

6"×6" R.C.C. POSTS

T.S. VERTICALS 2×2×¼"

THIS PANEL TO BE FITTED 6' WIDE ROLLSCREEN TO ADMIT BULKY PIECES FURNITURE AND ARTICLES.

STEPS

Fig. 62


HAND PUMP
C.I. MANHOLE COVER WITH
LOCKING ARRANGEMENT.
REINFORCED CONCRETE
COVER.
DRAIN
6'-0"
1'-6"
SUCTION
PIPE
WATER
LEVEL
PUMP PLUNGER.
FOOT VALVE
& STRAINER.


DRAIN.
GRADIENT 1 IN 25
DRAIN

୧୮୯୪ ମସିହାରେ ସେ ଛୁଟିରେ ଇଂଲଣ୍ଡରେ ଥିବାବେଳେ ଭାରତର ପ୍ରଧାନ ଶତ୍ରୁ ଓ ମେଲେରିଆର ଉତ୍ପତ୍ତିର ପ୍ରଧାନ କାରଣ ରକ୍ତରେ ଥିବା ବିଷାକ୍ତ ବୀଜାଣୁ ମାନଙ୍କୁ ଗୋଟିଏ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦେଖିବାର ସୁଯୋଗ ପାଇଲେ ।



(ଚିତ୍ର ନଂ ୭)

ଅଣୁବୀକ୍ଷଣ ଯନ୍ତ୍ରକୁ ଅବିଶ୍ରାନ୍ତ ଭାବେ ବ୍ୟବହାର କରି ଗୋଟି ଗୋଟି କରି ପ୍ରତ୍ୟେକ ମଶାଙ୍କୁ ପରୀକ୍ଷା କଲେ । ଶେଷକୁ ଗୋଟିଏ ମଶା ବାକି ରହିଲା । ଅଣୁବୀକ୍ଷଣ ଯନ୍ତ୍ରର ସେଇ ତାଙ୍କ ଟାଲରେ କଳଙ୍କି ଲାଗିଗଲା ।



(ଚିତ୍ର ୧୭)

ପରଦିନ ପ୍ରତ୍ୟୁଷରେ, ସେହି ଅଦ୍ଭୁତ ନଳୀମାନଙ୍କ ମଧ୍ୟରୁ ଡ଼େଙ୍ଗାରେ ଥୋଯାଥିବା ମଶା ସବୁ କାଢିନେଲେ । ଥରେ କାମୁଡ଼ିବାକୁ ଅଣାଏ ପଇସା ଦେଇ ସେ ଏହି ମଶାମାନଙ୍କ ମେଲେରିଆ ରୋଗୀଙ୍କୁ କାମୁଡ଼ାଇଲେ ।



(ଚିତ୍ର ୧୮)

ଶତ ଶତ ପରୀକ୍ଷାପରେ ସୁଦ୍ଧା ଡାକ୍ତର ରସ୍ ମେଲେରିଆ ଜୀବାଣୁର କୌଣସି ରହସ୍ୟ ଭେଦ କରିପାରିଲେ ନାହିଁ ।ପରେ ଗୋଟାଏ ନୂଆ ଧରଣର ମଶା ତାଙ୍କ ନିକଟକୁ ଅଣାଗଲା ।



(ଚିତ୍ର ୫.୨)

ଏହି ନୂଆ ଧରଣର ମଶା ଅଣ୍ଡା ଆଣିଥିବା ବ୍ୟକ୍ତି ସହିତ ସେ ଯାଇ ସେହି ମଶାର ଉତ୍ପତ୍ତି ସ୍ଥଳ ଗୋଟାଏ ଗାଡ଼ିଆ ବୋଲି ଆବିଷ୍କାର କରିଥିଲେ । କିନ୍ତୁ ଏହି ମଶା ମେଲେରିଆ ସଞ୍ଚରଣ ପଟୁ ନୁହନ୍ତି ।



(ଚିତ୍ର ୫.୧୦)

ମେଲେରିଆ ବ୍ୟାପୁଥିଲେ ସୁଦ୍ଧା ମଶା ସଂଖ୍ୟା କମ ଦେଖାଯାଉଥିଲା । 'ରସ' ପ୍ରତ୍ୟେକ ମଶା ଆଣିବା ବ୍ୟକ୍ତିକୁ ଗୋଟାଏ ଗୋଟାଏ ପୁରସ୍କାର ଦେବାପାଇଁ ଘୋଷଣା କଲେ । ଜଣେ ଲୋକ ୫ଟି କ୍ଷୁଦ୍ର ମଶା ଆଣିଥିଲା ।


(ଚିତ୍ର ୧୧)

'ରସ' ଜ୍ୱରକାନ୍ତ ଜଣେ ରୋଗୀ ନିକଟରୁ ରକ୍ତ ଶୋଷିଥିବା ଗୋଟାଏ ମଶାକୁ ଧରିଆଣିଲେ । ମଶାଟି କ୍ଷୁଦ୍ର ଓ ତାର ଡେଣା ଦାଗ ବଶିଷ୍ଟ । ତାକୁ ସେ ଧୂସରବର୍ଣ୍ଣ (Dapple wing) ନାମ ଦେଇଥିଲେ ।



(ଚିତ୍ର ନଂ ୭)

ପାନାମା କେନାଲ ଡାକ୍ତର ଗସର ଗୁରୁତ୍ୱପୂର୍ଣ୍ଣ ସାଧନାର ନିଦର୍ଶନ ସ୍ଥଳୀ । କେବଳ ତାଙ୍କ ପ୍ରବର୍ତ୍ତିତ ପ୍ରଣାଳୀରେ ସେହି ଅଞ୍ଚଳ ନିରାପଦ ହେଲା ଏବଂ ସେଠାରେ କେନାଲ ତିଆରି ହୋଇ ପାରିଥିଲା ।



(ଚିତ୍ର ନଂ ୮)

ମଶାର ଉତ୍ପତ୍ତି ସ୍ଥଳରେ ଔଷଧି ତୈଳ ସେଚନକରି ମଶା ସଂଖ୍ୟା ହ୍ରାସକରି ମେଲେରିଆ ବ୍ୟାଧି କିପରି ଆୟତ୍ତ କରାଯାଇପାରେ ସେ ତାହା ଦର୍ଶାଇ ଦେଇଥିଲେ ।



(ଚିତ୍ର ନଂ ୨୫)

ଘନଘନ ଗବେଷଣା ଦ୍ୱାରା ଡାକ୍ତର ରସଙ୍କ ଯୋଜନା ସିଦ୍ଧହେଲା । ଏକ ଜାତୀୟ ମଶା ଗୋଟିଏ ରୋଗୀଠାରୁ ଅନ୍ୟ ଏକ ସୁସ୍ଥ ବ୍ୟକ୍ତିର ଶରୀରକୁ ବ୍ୟାଧି ସଞ୍ଚାରଣ କରନ୍ତି ବୋଲି ସେ ସିଦ୍ଧାନ୍ତ କରିଥିଲେ ।



(ଚିତ୍ର ନଂ ୨୬)

ମେଲେରିଆ ବାହକ ମଶା ଓ ପକ୍ଷୀମାନଙ୍କୁ ନେଇ ସେ ପର୍ଯ୍ୟବେକ୍ଷଣ କରି ଦେଖିଲେ ଯେ ଏହି ମଶାମାନେ ପକ୍ଷୀମାନଙ୍କୁ ମଧ୍ୟ କାମୁଡ଼ି ସେମାନଙ୍କୁ ମଧ୍ୟ ମେଲେରିଆ ଜୀବାଣୁ ସଂକ୍ରମଣ କରନ୍ତି ।



(ଚିତ୍ର ୨୭)

ମେଲେରିଆ ସଂକ୍ରାନ୍ତରେ ଦୀର୍ଘ ତିନିବର୍ଷ ଅନୁସନ୍ଧାନ କରିବାପରେ ଡାକ୍ତର ରସ ମାନ୍ଦ୍ରାଜ ପ୍ରଦେଶର ଗ୍ରୀଷ୍ମ ଅବାସ ଉତକାମଣ୍ଡ ପର ଏକ ମାଲେରିଆ ପ୍ରପୀଡ଼ିତ ଅଞ୍ଚଳରେ ଛୁଟିର ଅବକାଶ କଟାଇ ମଶା ଅନ୍ୱେଷଣ କରିଥିଲେ । ଅଥଚ କିଛି ଦେଖିପାରି ନଥିଲେ ।



(ଚିତ୍ର ୨୮)

ଭାରତୀୟ ରୁକ୍ଷଗ୍ରୀଷ୍ମ ଋତୁରେ ସେ ଦୀର୍ଘ ଯାତ୍ରାମାନ କରି ନୂଆ ନୂଆ ମେଲେରିଆ ପୀଡ଼ିତ ଲୋକଙ୍କ ରକ୍ତ ପରୀକ୍ଷା କରୁଥିଲେ ଏବଂ ଜୀବାଣୁ ସମ୍ବନ୍ଧେ ତତ୍ତ୍ୱ ଅନୁସନ୍ଧାନ କରୁଥିଲେ ।


(ଚିତ୍ର ୧୦)

କେବଳ ଏକ ଜାତୀୟ ମଶା ମେଲେରିଆ ସଂକ୍ରମଣ କରନ୍ତି ବୋଲି ସିଦ୍ଧାନ୍ତ କରି ସେ ଏହି ମଶା ଦ୍ୱାରା ରୋଗ କିପରି ମେଲେରିଆ ସଞ୍ଚାର ହୁଏ ତାହା ଅନୁସନ୍ଧାନ କରିବାକୁ ଲାଗିଲେ ।



(ଚିତ୍ର ନଂ ୧୯)

ଦୀର୍ଘକାଳ କଠିନ ପରିଶ୍ରମ କରି ସେ ପରିଶେଷରେ ଯେଉଁ ମଶାଟିର ପେଟ ମଧ୍ୟରେ ମେଲେରିଆ ଜୀବାଣୁ ଆବିଷ୍କାର କରିଥିଲେ । ଏତେଦିନେ ରହସ୍ୟ ଉଦ୍‌ଘାଟିତ ହେଲା ।



(ଚିତ୍ର ନଂ ୨୦)

୧୯୨୦ ମସିହାରେ ଡାକ୍ତର ରୋନାଲ୍ଡ ରସ ଜଣେ ବିଶିଷ୍ଟ ବୈଜ୍ଞାନିକ ରୂପେ ଔଷଧି ଲାଗି ନୋବେଲ ପ୍ରାଇଜ ନାମକ ଏକ ଶ୍ରେଷ୍ଠ ସମ୍ମାନ ଲାଭ କରିଥିଲେ । ବିଶ୍ବର ଏହି ଶ୍ରେଷ୍ଠ ସମ୍ମାନ ତାଙ୍କୁ ସ୍ୱିଡ଼େନର ରାଜା ପ୍ରଦାନ କରିଥିଲେ ।



(ଚିତ୍ର ନଂ ୯)

ବ୍ରିଟେନ ମଧ୍ୟ ଆପଣା ଦେଶର ପ୍ରଖ୍ୟାତନାମା ପୁତ୍ରକୁ ସମ୍ମାନିତ କରିଥିଲେ । ନିତାନ୍ତ ଦୁର୍ଦ୍ଦମ୍ୟ ବ୍ୟାଧି ମେଲେରିଆ କିପରି ଆୟତ୍ତାଧୀନ ହୋଇପାରିବ ତାହା ପୃଥିବୀରେ ପ୍ରଚାରକର ଡାକ୍ତର ରସ ୧୯୩୨ ମସିହାରେ ପ୍ରାଣତ୍ୟାଗ କରିଥିଲେ ।

## ୨ ମେଲେରିଆ ଦ୍ୱାରା ଭାରତର କ୍ଷତି

କେବଳ ଭାରତରେ ମେଲେରିଆ ଜ୍ୱର ପ୍ରତିବର୍ଷ ଯେଉଁ କ୍ଷତି ଓ ରକ୍ତପାତ ଘଟାଇଛି ତାହା ଅସୀମ । (୨୨ ଚିତ୍ର ଦେଖ)

ଏଥିଦ୍ୱାରା ପ୍ରାୟ ୨୦ ଲକ୍ଷ ଲୋକେ ମୃତ୍ୟୁ ମୁଖରେ ପଡ଼ନ୍ତି । ମେଲେରିଆ ବ୍ୟାପିବା ଫଳରେ ଭାରତରେ ପ୍ରାକୃତିକ ସମ୍ପଦ, ବ୍ୟବସାୟ, ବାଣିଜ୍ୟ, କୃଷି, ରେଲ ଓ ଖଣିଜ ସଂପଦର ବିକାଶରେ ଘୋର ଅନ୍ତରାୟ ହେଉଛି । ଏହି ଅର୍ଥନୈତିକ କ୍ଷତି ବ୍ୟତିରେକେ ମାଲେରିଆ ଜନସାଧାରଣଙ୍କ ମାନସିକ, ପାରିବାରିକ ଓ ଜାତୀୟ ଉନ୍ନତିର ପଥ ମଧ୍ୟ ରୋଧ କରେ । ଏହି ବ୍ୟାଧି ଭୀଷଣ ଅର୍ଥନୈତିକ ଦୁର୍ଗତି ଘଟାଏ । ବାଣିଜ୍ୟ ବ୍ୟବସାୟକୁ ପଙ୍ଗୁ କରିଦିଏ । ସ୍ତ୍ରୀ, ପୁରୁଷ ଓ ଶିଶୁମାନଙ୍କ ଅକାଳ ମରଣ ସଂଖ୍ୟା ବୃଦ୍ଧି କରାଏ ଏବଂ ବଡ଼ ବଡ଼ ଗଠନ ମୂଳକ ବୈଜ୍ଞାନିକ ଯୋଜନାମାନଙ୍କର ଏହାଦ୍ୱାରା ଘୋର କ୍ଷତି ହୁଏ । ଏହି ଭୟାନକ ବ୍ୟାଧିଦ୍ୱାରା ଜ୍ୱରରେ ଦୁର୍ଗମ ଅରଣ୍ୟ ଅଞ୍ଚଳର ଆଦିମ ଅଧିବାସୀମାନଙ୍କ ମଧ୍ୟରୁ ବହୁ ସଂଖ୍ୟକ ଲୋକ ମୃତ୍ୟୁ ମୁଖରେ ପଡ଼ନ୍ତି ।

ମେଲେରିଆ ଦ୍ୱାରା ପରିବାର ତଥା ବ୍ୟକ୍ତି ବିଶେଷଙ୍କର ଘଟୁଥିବା ବାର୍ଷିକ କ୍ଷତିର ହିସାବ କରିବାକୁ ଯାଇ କର୍ଣ୍ଣେଲ ସିନଟାନ୍ ଏହା ୧୦୦ କୋଟି ଟଙ୍କା ବୋଲି ନିର୍ଣ୍ଣୟ କରିଅଛନ୍ତି । ଭାରତର ବାର୍ଷିକ ଆୟ ସହିତ ଏହି କ୍ଷତି ପ୍ରାୟ ସମାନ ।

## (୩) ମେଲେରିଆ-ତାହାର ପ୍ରାଦୁର୍ଭାବ

ସାଧାରଣତରେ ପ୍ରତି ବର୍ଷ ଏହି ରୋଗ ପ୍ରାୟ ଦଶଲକ୍ଷ ଲୋକଙ୍କ ମୃତ୍ୟୁପାଇଁ ଦାୟୀ ବୋଲି ହିସାବ କରାଯାଇଅଛି । ମହାମାରୀ ରୂପେ ଦେଖାଦେଲେ ମୃତ୍ୟୁ ସଂଖ୍ୟା ଅଧିକରି, ପାଞ୍ଚ ଲକ୍ଷ ଯାଏ ବୃଦ୍ଧି ପାଇଥାଏ ।

# ମେଲେରିଆ ଦ୍ୱାରା ଭାରତର କି କ୍ଷତି ହୁଏ

| | |
|---|---|
| ଜୀବନ ନାଶ | ୨୦ ଲକ୍ଷ |
| ମେଲେରିଆରେ ପୀଡ଼ିତ ଲୋକ ସଂଖ୍ୟା | ୧୦ କୋଟି |
| ଆୟୁହାନି | ୫ କୋଟି ଟଙ୍କା |
| ଅନ୍ତ୍ୟେଷ୍ଟିକ୍ରିୟାରେ ଖର୍ଚ୍ଚ | ୧ କୋଟି ଟଙ୍କା |
| କାର୍ଯ୍ୟ ଅବସର କ୍ଷତି | ୬ କୋଟି ଟଙ୍କା |
| ମେଲେରିଆ ପର ଦୌର୍ବଲ୍ୟ ଓ ଅନ୍ୟାନ୍ୟ କାରଣମାନଙ୍କ ଯୋଗୁଁ କ୍ଷତି | ୨' କୋଟି ଟଙ୍କା<br>୨୫ କୋଟି ,, |

( ଚିତ୍ର ନଂ ୨୨ )

ମେଲେରିଆ ଦ୍ୱାରା ଘଟୁଥିବା ପ୍ରତ୍ୟକ୍ଷ ମୃତ୍ୟୁ ବ୍ୟତୀତ ଏହାର ପରୋକ୍ଷ ପ୍ରତିକ୍ରିୟା ମଧ୍ୟ ଭୀଷଣ । ପରୋକ୍ଷଭାବେ ପୀଡ଼ିତ ବ୍ୟକ୍ତିର ରୋଗ ପ୍ରତିରୋଧ ଶକ୍ତି କମାଇ ଦେବା ଫଳରେ ସେମାନଙ୍କୁ ଅନ୍ୟାନ୍ୟ ରୋଗ ଆକ୍ରମଣ କରେ ଏବଂ ତଦ୍ୱାରା ସେମାନେ କିଛିଦିନପରେ ମୃତ୍ୟୁମୁଖରେ ପଡ଼ନ୍ତି । ସୁତରାଂ ଏହାର ପ୍ରତ୍ୟକ୍ଷ ଓ ପରୋକ୍ଷ ଉଭୟ ପ୍ରତିକ୍ରିୟା ଫଳରେ ଅନ୍ତତଃ ପ୍ରତ୍ୟେକ ବର୍ଷକୁ କୋଡ଼ିଏ ଲକ୍ଷ ଲୋକଙ୍କ ମୃତ୍ୟୁପାଇଁ

ଯେ ଏହି ରୋଗ ଦାୟୀ ଏଥିରେ କୌଣସି ସନ୍ଦେହ ନାହିଁ । କେବଳ ବ୍ରିଟିଶ ଭାରତରେ ଅନ୍ତତଃ ୧୦୦୦୦୦୦୦୦୦ ଲୋକ ଏହି ରୋଗରେ ଆକ୍ରାନ୍ତ ହୁଅନ୍ତି ବୋଲି ହିସାବ କରାଯାଇଛି । ବୟୋବୃଦ୍ଧ ଓ ଶିଶୁମାନେ ବିଶେଷ ଭାବେ ଏହି ରୋଗ ଦ୍ୱାରା ଆକ୍ରାନ୍ତ ହୁଅନ୍ତି ।

ମେଲେରିଆ ବିସ୍ତାର ଲାଗି ଯେଉଁ ସବୁ ମନୁଷ୍ୟକୃତ କାର୍ଯ୍ୟର ପ୍ରତ୍ୟକ୍ଷ ପ୍ରଭାବ ରହିଛି ସେମାନଙ୍କ ମଧ୍ୟରୁ କେନାଲ ତଟ ଦେଶରେ, ସ୍ରୋତ ନିକଟରେ, ସଡ଼କ ପାର୍ଶ୍ୱ ଦେଶରେ, ରେଲ ପଥମାନଙ୍କରେ ଥିବା ବନ୍ଧ ପ୍ରଭୃତି ସ୍ଥାନରେ ଯେଉଁ ସବୁ ଗାତ ଖୋଳା ହୋଇ ଥାଏ ସେସବୁ ଖୁବ୍ ମାରାତ୍ମକ । ବିଶେଷତଃ ରାସ୍ତା ତିଆରି କରିବା ବେଳେ ଯେଉଁ ସବୁ ଗାତ ଖୋଳା ହୁଏ ତାହା ଅତ୍ୟନ୍ତ କ୍ଷତିକାରକ ବ୍ୟବସ୍ଥା, ଯେହେତୁ ଏହି ଗାତଗୁଡ଼ିକ ମଶା ଉତ୍ପତ୍ତି ଦିଗରେ ବିଶେଷ ସୁଯୋଗ ଦିଅନ୍ତି ଏବଂ ତଦ୍ୱାରା ନିକଟରେ ଥିବା ଗ୍ରାମମାନଙ୍କରେ ମଧ୍ୟ ମଶା ବୃଦ୍ଧିର ଆଶଙ୍କା ରହେ ।

## (୪) ମେଲେରିଆ-ଋତୁ ଅନୁସାରେ ପରିବର୍ତ୍ତନ

ବର୍ଷାର ଶେଷ ଆଡ଼କୁ ଜୁଲାଇ ଠାରୁ ଡିସେମ୍ବର ମାସ ଯାଏ ଏହି ରୋଗର ପ୍ରାଦୁର୍ଭାବର ସମୟ । ଆକ୍ଟୋବର କିମ୍ବା ନଭେମ୍ବର ବେଳକୁ ଏହାର ପ୍ରାଦୁର୍ଭାବ ଚରମ ଅବସ୍ଥାରେ ପହଞ୍ଚେ । ଆର୍ଦ୍ର ପବନ ଓ ଗ୍ରୀଷ୍ମ ଜଳବାୟୁ ଏହି ରୋଗ ଉତ୍ପତ୍ତି ପାଇଁ ବିଶେଷ ଅନୁକୂଳ । ନିମ୍ନ ସମତଳ ଭୂମି, ସନ୍ତସନ୍ତିଆ ଭୂମି ଓ ନଦୀ କେନାଲ ବା ବଡ଼ ଜଳାଶୟମାନଙ୍କ ନିକଟରେ ଅବସ୍ଥିତ ଥିବା ସହରମାନଙ୍କରେ ଏହି ରୋଗ ସହଜରେ ବ୍ୟାପେ ।

ଏହି ରୋଗ ୫୦୦୦ ଫୁଟ ଉଚ୍ଚରେ ଥିବା ପାର୍ବତ୍ୟ ଅଞ୍ଚଳରେ କ୍ୱଚିତ୍ ଦେଖାଯାଏ ।

# (୪) ସମୁଦ୍ର ଉପକୂଳ ଅଞ୍ଚଳର ମେଲେରିଆ

ଓଡ଼ିଶାର ଉପକୂଳ ଅଞ୍ଚଳର ପ୍ରଧାନ ରୋଗ ସଂକ୍ରମଣ ମଶା 'ଏ ଆନୁଲାରିସ୍' (A Annularis) ନାମକ ଏକଜାତୀୟ ମଶା । ଏହି ଜାତୀୟ ମଶାର ସଂକ୍ରମଣ କାଳ ସେପ୍ଟେମ୍ବର ଠାରୁ ନଭେମ୍ବର ମାସ ଯାଏ ରହେ । ବେଳେ ୨ ଡିସେମ୍ବର ମାସ ଯାଏ ସୁଦ୍ଧା ଦେଖାଯାଏ । ସାଧାରଣତଃ ବାସଗୃହ ଅପେକ୍ଷା ଗୁହାଳରେ ଏହା ବିଶେଷ ଭାବେ ଦେଖାଯାନ୍ତି ଏବଂ ନଭେମ୍ବର ମାସ ବେଳକୁ ବାସ ଗୃହକୁ ସୁଦ୍ଧା ବ୍ୟାପିବା ପାଇଁ ପ୍ରବଳ ଭାବେ ଚେଷ୍ଟା କରନ୍ତି ।

ମୁଖ୍ୟତଃ ନହେଲେ ସୁଦ୍ଧା ସାଧାରଣତଃ ଏହି ଜାତୀୟ ମଶା ମନୁଷ୍ୟମାନଙ୍କୁ କାମୁଡ଼ନ୍ତି । ଏମାନଙ୍କ ଯୌବନ ଜୀବନ ଶରତ କାଳରେ ବିଶେଷ ଭାବେ ବୃଦ୍ଧି ପାଇଥାଏ ଏବଂ ଫଳରେ ପଶୁ ଓ ମନୁଷ୍ୟ ଉଭୟଙ୍କ ସଂସ୍ପର୍ଶରେ ଆସିବା ପାଇଁ ଏମାନଙ୍କୁ ସୁଯୋଗ ମିଳେ । ଅଧିକାଂଶ ବର୍ଷ ଏହି ଋତୁରେ ସବୁଠାରୁ ଅଧିକ ଛୁଆ ଜାତ ହୁଅନ୍ତି ଏବଂ ଏତିକିବେଳେ ଏ ଜାତୀୟ ମଶା ଅସଂଖ୍ୟଭାବେ ବୃଦ୍ଧି ପାଇଥାନ୍ତି । ଏମାନେ ଏତେ ମାରାତ୍ମକ ଯେ ଅଳ୍ପ ସଂସ୍ପର୍ଶରେ ଆସିଲେ ସୁଦ୍ଧା ରୋଗ ସଂକ୍ରମିତ କରିପାରନ୍ତି ।

ଏ 'ଏକୋନିଟାସ୍'—ଆଉ ଏକ ଜାତୀୟ ରୋଗ ସଂକ୍ରମଣକାରୀ ମଶା । ସାତବର୍ଷ ଗବେଷଣା ପରେ ଏ ମଶାମାନେ କେତେକ ଅଞ୍ଚଳରେ ରୋଗ ସଂକ୍ରମଣ ଦୃଷ୍ଟିରୁ ଗୋଟାଏ ପ୍ରଧାନ ଶତ୍ରୁ ବୋଲି ସ୍ଥିର କରାଯାଇଛି । ଏ ମଶାମାନଙ୍କ ସଂକ୍ରମଣ କ୍ରିୟା ସେପ୍ଟେମ୍ବର ଠାରୁ ଡିସେମ୍ବର ମଧ୍ୟରେ ହୋଇ ଥାଏ । କିନ୍ତୁ ଜାନୁଏରୀ ଠାରୁ ମାର୍ଚ୍ଚ ପର୍ଯ୍ୟନ୍ତ ଏମାନେ ପ୍ରବଳ ହୋଇଥାନ୍ତି । ସେତେବେଳେ

ଏମାନଙ୍କ ଦ୍ୱାରା 'ଏଆନୁଲରିସ' ରୋଗ ସଂକ୍ରମିତ ହୁଏନାହିଁ । ଏଜାତୀୟ ମଶା ଅପେକ୍ଷା 'ଏ ଏକୋନିଟାସ'ର ଜାତୀୟ ମଶା କାମୁଡ଼ାରୁ ରୋଗ ସଂକ୍ରମଣ ହାର ଖୁବ୍ ବେଶୀ କିନ୍ତୁ ଏମାନଙ୍କର ପ୍ରବଳତା 'ଏ ଆନୁଲରିସ' ମଶା ଠାରୁ ପ୍ରାୟ ଦଶଗୁଣ ନ୍ୟୂନ । ରୋଗ ସଂକ୍ରାମକ ହିସାବରେ ଏହି ମଶାମାନଙ୍କ କାର୍ଯ୍ୟ କିଛି କମ ନୁହେଁ ।

ମେଲେରିଆ ଜ୍ୱର ଗୋଟାଏ ସଂକ୍ରାମକ ବ୍ୟାଧିରୂପେ ଓଡ଼ିଶାରେ ପ୍ରବଳଭାବେ ବ୍ୟାପି ରହିଛି । ଏହା ସ୍ୱତନ୍ତ୍ରଭାବେ ଏକ ସ୍ଥାନୀୟ ରୋଗ ଏବଂ 'ଏ ଆନୁଲରିସ' ମଶା ଉତ୍ପନ୍ନର ସହାୟକ ସ୍ଥାନୀୟ ଜୀବତତ୍ତ୍ୱ କାରଣ ଉପରେ ଏହା ନିର୍ଭର କରେ ।

'ଏ ଆନୁଲରିସ' ମଶାମାନଙ୍କ ଉତ୍ପତ୍ତିର ପ୍ରଧାନ ସ୍ଥଳ ପୋଖରୀ ଓ ଧାନ କ୍ଷେତ । ପୋଖରୀମାନଙ୍କରୁ ଦଳ ଆଦି ବାହାର କରି ତାକୁ ପରିଷ୍କାର ରଖିବା ଦ୍ୱାରା ଯାହା ଫଳ ହୁଏ ଏବଂ ସେଥି ପାଇଁ କେତେ ବ୍ୟୟ ହୁଏ ତାହା ପୂର୍ବେ ବର୍ଣ୍ଣିତ ହୋଇଅଛି ।

'ଏ ଏକୋନିଟାସ' ମଶାର ଉତ୍ପତ୍ତି ସହିତ ଧାନ ଗଦାର ବିଶେଷ ସମ୍ବନ୍ଧ ଥିବାର ଅନୁମାନ କରାଯାଏ ।

ଓଡ଼ିଶାର ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ମେଲେରିଆ ନିବାରଣ କରିବାକୁ ହେଲେ ତୃଣ ଲତାଦିର ଜଙ୍ଗଲ ସଫା କରିବାକୁ ହେବ । ଏହି କାର୍ଯ୍ୟ ଗ୍ରାମଲୋକଙ୍କ ପରିଶ୍ରମ ଦ୍ୱାରା ସହଜରେ ହୋଇ ପାରିବ । ଗ୍ରାମ ଲୋକଙ୍କ ମଧ୍ୟରେ ଏଥିପାଇଁ ଶିକ୍ଷା ଆବଶ୍ୟକ । ଧାନ ଅମଳ କରିବାପରେ ଏବଂ ଆଗାମୀ ଫସଲ ପାଇଁ ଜମିରେ ହଳ ପକାଇବା ପୂର୍ବରୁ ଏବଂ ବର୍ଷାରମ୍ଭରେ ଧାନ ବୁଣିବା ପୂର୍ବରୁ ପ୍ରାୟ

ଗ୍ରୀଷ୍ମମାସ କାଳ ଗ୍ରାମବାସୀମାନଙ୍କର ଖୁବ୍ କମ୍ କାମଥାଏ ବା ,କିଛି କାମ ନଥାଏ । ସେତେବେଳେ ସେମାନଙ୍କୁ ଉପଦେଶ ଦେଇ ଏ କାର୍ଯ୍ୟରେ ନିଯୁକ୍ତ କରାଯାଇ ପାରିବ କିମ୍ବା ସାଧାରଣ ସ୍ୱାସ୍ଥ୍ୟରକ୍ଷା ଆଇନ ଦୃଷ୍ଟିରୁ ଆଇନତଃ ସେମାନଙ୍କୁ ଏଥିଲାଗି ବାଧ କରାଯିବ । ଏହି କାର୍ଯ୍ୟରେ ସେପରି କୌଣସି ଅର୍ଥ ବ୍ୟୟ ଆବଶ୍ୟକତା ପଡ଼ିବ-ନାହିଁ । ଜଳାଶୟ ଓ ମାଟିଖୋଳା ହୋଇ ଅଣ୍ଡା ଯାଇଥିବା ଯୋଗୁଁ ଖାଲମାନ ସଫା ରଖିବା ପାଇଁ ଉପଦେଶ ଦେବା ମଧ୍ୟ ଉଚିତ । ଧାନ-କ୍ଷେତରେ ମଶାମାନଙ୍କ ଉତ୍ପତ୍ତି ରୋଧ କରିବାକୁ ହେଲେ ଶତକଡ଼ା ୨ ଭାଗ ତୁତିଆ ଚୂର୍ଣ୍ଣ ନିକ୍ଷେପ କରିବାକୁ ହେବ । 'ପାରିସ ଗ୍ରୀନ' (Paris Green) ଚୂର୍ଣ୍ଣ ଯେପରି ଭାବେ ବ୍ୟବହୃତ ହୁଏ ଏବଂ ସେହି ନିୟମରେ ଏହି ତୁତିଆ ଚୂର୍ଣ୍ଣ ବ୍ୟବହାର କରାଯିବ । ପରୀକ୍ଷା ଦ୍ୱାରା ପ୍ରମାଣିତ ହୋଇଛି ଯେ ଉପରୋକ୍ତ ନିୟମରେ ଆବଶ୍ୟକ ବେଳେ ତୁତିଆ ଚୂର୍ଣ୍ଣ ଜମି କ୍ଷେତରେ ଦେବା ଦ୍ୱାରା ଧାନ ଫସଲର କୌଣସି କ୍ଷତି ଘଟେ ନାହିଁ ।

## (୭) ଶିଶୁମାନଙ୍କ ଉପରେ ମାଲେରିଆର ପ୍ରଭାବ

ମେଲେରିଆକୁ ଶିଶୁମାନଙ୍କ ରୋଗ ବୋଲି କୁହାଯାଇ ପାରେ । ମେଲେରିଆ ପ୍ରପୀଡ଼ିତ ଅଞ୍ଚଳରେ ବହୁ ସଂଖ୍ୟକ ଶିଶୁ ବାଲ୍ୟ ଜୀବନରେ ଏହି ରୋଗରେ ପୀଡ଼ିତ ହୁଅନ୍ତି ଏବଂ ପରବର୍ତ୍ତୀ ଜୀବନରେ ଏହି ରୋଗକୁ ସହିବାର ଶକ୍ତି ସେମାନଙ୍କର ଜାତ ହୁଏ । ଯଦି କେହି ଏକ-ସମ୍ପ୍ରଦାୟ ମଧ୍ୟରେ ଏହି ରୋଗର ବ୍ୟାପକତା ନିରୂପଣ କରିବାକୁ ଇଚ୍ଛାକରେ, ତାହାହେଲେ ତାଙ୍କୁ ପ୍ଲୀହା ସୂଚୀ (Splenic Index) ଆଶ୍ରୟ ନେବାକୁ ପଡ଼ିବ ଅର୍ଥାତ୍ ୨ ବର୍ଷ ଠାରୁ ଦଶ ବର୍ଷ ବୟସର ପିଲାମାନଙ୍କ ମଧ୍ୟରେ ଶହେକେ କେତେଜଣଙ୍କର ପ୍ଲୀହା ବୃଦ୍ଧି ହୋଇଅଛି ତାହାର ହିସାବ ଧରିବାକୁ ହେବ । (ଛବି ୨୩ ଦ୍ରଷ୍ଟବ୍ୟ) । ଏହି

ପ୍ରଣାଳୀ ଦ୍ୱାରା ଜଣା ଯାଇଛି ଯେ ଶତକଡ଼ା ପ୍ରାୟ ୯୦ ଜଣ ଶିଶୁ ଏହି ରୋଗରେ ଆକ୍ରାନ୍ତ ହୁଅନ୍ତି । ପ୍ରଥମ କେତେଥର ରୋଗ ଆକ୍ରମଣ ପରେ ଅଧିକାଂଶ ଶିଶୁଙ୍କ ଠାରେ ଜ୍ୱରର ପ୍ରକୋପ ଦେଖାଯାଏ ନାହିଁ କିମ୍ବା ସେମାନେ ପିତା ମାତାଙ୍କ ଦୃଷ୍ଟି ଆକର୍ଷଣ କଲାଭଳି କଠିନ ରୋଗାକ୍ରାନ୍ତ ହେବାର ଦେଖା ଯାଆନ୍ତି ନାହିଁ । ଏଣୁ ସେମାନେ ସୁସ୍ଥ ସବଳ ବୋଲି ବୋଧ ହେଉଥିଲେ ମଧ୍ୟ ଏବଂ ବେଳେ ବେଳେ ଯେଉଁ ସବୁ ଜ୍ୱର ତଥା ଅନ୍ୟାନ୍ୟ ସାମାନ୍ୟ ଅସୁସ୍ଥତା ଦେଖାଯାଏ ତାହା ସବୁ ଦାନ୍ତ ରୋଗ, ଅଜୀର୍ଣ୍ଣ ଦୋଷ ଏବଂ ଋତୁ ପରିବର୍ତ୍ତନ ଓ ପାଗ ଯୋଗୁଁ ହେଉଛି ବୋଲି ଧରି ନିଆଯାଏ ଅଥଚ ସେମାନଙ୍କ ପେଟ ମଧ୍ୟରେ ବଡ଼ ବଡ଼ ପ୍ଲୀହା ହୋଇଥାଏ ଏବଂ ଅସଂଖ୍ୟ ମେଲେରିଆ ଜୀବାଣୁ ଶରୀର ମଧ୍ୟରେ ଆଶ୍ରୟ ନେଇଥାନ୍ତି ମଶା-ଜୀବାଣୁମାନଙ୍କ ଆଶ୍ରୟ ପାଇଁ ଶରୀର ଗୋଟିଏ ଉପଯୁକ୍ତ ଆଧାର ରୂପେ କାର୍ଯ୍ୟକରେ । ପିତାମାତାମାନେ ଏହି ବିପଦ ଜାଣି ପାରନ୍ତି ନାହିଁ ଏଣୁ ଶିଶୁମାନଙ୍କ ଠାରେ ସବୁ ପ୍ରକାର ଜ୍ୱର ବା ସାଧାରଣ ସ୍ୱାସ୍ଥ୍ୟ ଭଙ୍ଗ ଦେଖାଯିବା ମାତ୍ରେ ଏଥିର ପ୍ରତିକାର ବ୍ୟବସ୍ଥା ଉପଯୁକ୍ତ ଭାବେ କରିବା ପାଇଁ ପିତାମାତାମାନଙ୍କୁ ଶିକ୍ଷା ଦିଆଯିବା ଉଚିତ । ପିତାମାତାମାନେ ଏ ସମ୍ବନ୍ଧରେ ଚିକିତ୍ସକମାନଙ୍କ ପରାମର୍ଶ ନେବା ଉଚିତ ଓ ସରକାରୀ ଚିକିତ୍ସାଳୟ ଓ ହାସପାତାଳରେ ସେମାନଙ୍କ ଚିକିତ୍ସାର ବ୍ୟବସ୍ଥା କରିବା ଉଚିତ । ଶିଶୁମାନଙ୍କ ଶରୀର ମଧ୍ୟରୁ ରୋଗ ଜୀବାଣୁ ସମ୍ପୂର୍ଣ୍ଣ ଭାବେ ଧ୍ୱଂସ ହେବା ପର୍ଯ୍ୟନ୍ତ ଯଥେଷ୍ଟ ଭାବେ ସେମାନେ ଚିକିତ୍ସିତ ହେବା ବିଧେୟ । ତାହାହେଲେ ମଶା କାମୁଡ଼ିଲେ ମଧ୍ୟ ସେମାନେ ରକ୍ତ ଶୋଷିବେ ସିନା ଜୀବାଣୁ ଆଉ ସେମାନଙ୍କ ଶରୀରରେ ପ୍ରବେଶ କରିପାରିବ ନାହିଁ । କୌଣସି ଅଞ୍ଚଳରେ ଅସଂଖ୍ୟ ଅସଂଖ୍ୟ ମଶା ଥାଇ ପାରନ୍ତି, କିନ୍ତୁ ତାହା ଜୀବାଣୁ ମାନଙ୍କର ଆଧାର ନ ହୋଇ-ପାରେ । ସୁତରାଂ ସେ ସ୍ଥାନ ମଶାମାନଙ୍କ ଯୋଗୁଁ ବିପଜ୍ଜନକ ବୋଧ

Fig. No. 25A.



**Health is Wealth.**

ସେଗୁଡ଼ିକରେ ପାଣି ଛାଡ଼ିଦେଲେ ମଶାର ଡିମ୍ବ ତା ଛଡ଼ା ମେଲେରିଆ ସଫଳତାର ସହିତ ନିବାରଣ କରାଯାଇ ପାରିବ । ମିଶ୍ୟ ବହିଗର ଏହି ନୀତି ଅନୁ..., ମଫସଲ ଅଞ୍ଚଳରେ ମଶା ଉତ୍ପତ୍ତି ସ୍ଥଳମାନ ବହୁ ସଂଖ୍ୟାରେ ଧ୍ୱଂସ କରିବା ସମ୍ଭବ ପର ହେବ ।

୨୪ଶ ଛବିରେ ଯେଉଁ ଜଳପୂର୍ଣ୍ଣ ପୋଖରୀ ଦର୍ଶା ଯାଇଛି ସେଥିରେ ମଶା ପୂର୍ଣ୍ଣ ହୋଇ ରହିଛି । ପୋଖରୀ ନିକଟରେ ବାସ କରୁଥିବା ଓ ଏହି ପାଣି ପିଉଥିବା ଲୋକେ ମେଲେରିଆ ଜ୍ୱରରେ ପୀଡ଼ିତ ହେଉଛନ୍ତି । ପ୍ଲୀହା ବୃଦ୍ଧି ହୋଇଥିବା ଜଣେ ଲୋକକୁ ୨୫ଶ ଛବିରେ ଦର୍ଶାଇ ଦିଆ ଯାଇଛି । ୨୬ଶ ଛବିରେ ଦର୍ଶାଇ ଦିଆଯାଇ ଥିବା ଅନ୍ୟ ଏକ ପୋଖରୀଟିକୁ ପରିଷ୍କାର କରାଯାଇଛି । ସେଥିରେ ଆଉ ମଶା ନାହାନ୍ତି; ତାହା ନିକଟରେ ବାସ କରୁଥିବା ଓ ସେଥିରୁ ଜଳପାନ କରୁଥିବା ଲୋକେ ମେଲେରିଆ ଜ୍ୱରରୁ ନିରାପଦ ରହିଛନ୍ତି ଏବଂ ସେମାନଙ୍କର ପ୍ଲୀହା ବୃଦ୍ଧି ହୋଇନାହିଁ ।

ତୁମ୍ଭମାନଙ୍କ ଘର ଭିତରେ ଥିବା ଗାତ ଓ ଘର ଚାରିପଟେ ଥିବା ପୋଖରୀକୁ ପୋତିଦେବା ଦ୍ୱାରା ମଶାମାନଙ୍କ ଉତ୍ପତ୍ତିକୁ ନିବାରଣ କରାଯାଇ ପାରିବ । (୨୬ଶ ଚିତ୍ର ଦ୍ରଷ୍ଟବ୍ୟ) ଜଳାଶୟଗୁଡ଼ିକ ଉପରକୁ ଘନ ଭାବରେ ମାଡ଼ି ଆସିଥିବା ବୃକ୍ଷଲତାଦି ଓ ପାଣିରେ ଜାତ ହୋଇଥିବା ଅନାବଶ୍ୟକ ଗଛ, ଜଳି ପ୍ରଭୃତି ବାହାର କରି ଜଳାଶୟକୁ ନିର୍ମଳ ଓ ପରିଷ୍କାର କରି ରଖିବା ଉଚିତ । କେବଳ 'ଡକ୍‌ଉଡ୍' ଜାତୀୟ ଉଦ୍ଭିଦକୁ ବାହାର ନକରି ରଖାଯାଇପାରେ । ଜଳାଶୟଟି ବଡ଼ ଆୟତନ ବିଶିଷ୍ଟ ହୋଇଥିବା ଯୋଗୁଁ ତାହାକୁ ପୋତିବା ସମ୍ଭବପର ନହେଲେ ପୋଖରୀରେ ଯେତେଦୂର ପାଣି ରହିଛି ତା ଉପରେ କିରାସିନିତେଲ ଢାଳି ଦିଆଯାଇ ପାରିବ । (୨୭ଶ ଚିତ୍ର ଦ୍ରଷ୍ଟବ୍ୟ) । ସେହି କିରାସିନିତେଲ କ୍ରମେ କ୍ରମେ ମେଲିଯାଇ କ୍ଷୁଦ୍ର କ୍ଷୁଦ୍ର

ମଶାମାନଙ୍କ ଶ୍ୱାସରୁଦ୍ଧ କରିଦେବ ଏବଂ ଫଳରେ ସେଗୁଡ଼ିକ ମରିଯିବେ । ଯେଉଁ ଜାତୀୟ ମାଛ ଚିତ୍ରରେ ଦେଖାଇ ଦିଆଯାଇଛି ସେହି ମାଛ ମଶାଛୁଆ ଖାଇବାକୁ ବଡ଼ ଭଲ ପାଆନ୍ତି । ବର୍ଷ ତମାମ ଜଳ ରହୁଥିବା ପୋଖରୀଗୁଡ଼ିକରେ ସେପରି ମାଛମାନ ପୋଷି ରଖିବା ଉଚିତ । ( ୨୮ଶ ଚିତ୍ର ଦ୍ରଷ୍ଟବ୍ୟ )

ଅତିରିକ୍ତ ଖଣି ବୃଷ୍ଟିରୁ ହେଉ କିମ୍ବା ଜଳ ପାଇବାର ଏକମାତ୍ର ଆଧାର ହେତୁ ହେଉ ଯଦି କୌଣସି ସମୟରେ ବଡ଼ ବା ଛୋଟ ପୋଖରୀମାନଙ୍କରୁ ଜଳ ବାହାର କରିବା ବା ପୋତିବା ଅସମ୍ଭବ ହୁଏ ତାହାହେଲେ ତଳ ଲିଖିତ ବ୍ୟବସ୍ଥାମାନ ଅବଲମ୍ବନ କରାଯାଇ ପାରିବ ।

(କ) ଜଳାଶୟମାନଙ୍କରେ ନିୟମିତ ରୂପେ 'ପ୍ୟାରିସ ଗ୍ରୀନ' ଚୂର୍ଣ୍ଣ ପକାଇବାକୁ ହେବ ।

(ଖ) ପୋଖରୀ କୂଳରେ ଶାଖା ପ୍ରଶାଖା ମେଲି ପୋଖରୀର ପାଣି ଉପରକୁ ମାଡ଼ି ଯାଇଥିବା ଗଛଲତା ଓ ଅନ୍ୟାନ୍ୟ ଉଦ୍ଭିଦ ବାହାର କରି ଜଳାଶୟମାନ ପରିଷ୍କାର କରି ରଖିବାକୁ ହେବ ।

(ଗ) 'ତୁତିଆ' ଚୂର୍ଣ୍ଣ ପ୍ରୟୋଗ କରି ଅନାବଶ୍ୟକ ଗଛଲତା ଧ୍ୱଂସ ସାଧନ କରିବାକୁ ହେବ ।

(ଘ) ବଡ଼ ବଡ଼ ତୃଣାଦି ବାହାର କରିବାକୁ ହେଲେ ଏକ ପ୍ରକାର ଜଳ କରତ ଯନ୍ତ୍ର (Sub aqueous) ବ୍ୟବହାର କରାଯାଇ ପାରିବ । ଏ ଧରଣର କରତ ଗୋଟାଏ ଲମ୍ବା ଲୁହା ଏବଂ ଶଳାକାର, ତାହାର ଉଭୟ ପାଖରେ କରତ ଧାର ସୀସା ଦ୍ୱାରା ଏହା ଓଜନିଆ ହୋଇଥାଏ ଏବଂ ଦୁଇ ପଟରେ ଗୋଟାଏ ଦଉଡ଼ି ସଂଲଗ୍ନ ହୋଇଥାଏ । ଜଳାଶୟର ଉଭୟ ପଟରେ ଜଣେ ଲେଖାଏ ଲୋକ ରହି ଏହି ଦଉଡ଼ି ଟାଣିବାଦ୍ୱାରା ବାଲୁଙ୍ଗାଦି ତୃଣ ଅପେ ଆପେ କାଟି ହୋଇଯାଏ ।

(ଙ) ଜଳାଶୟର ଏକ ଅଂଶକୁ ଗଭୀରିଆ କରିବା ଉଚିତ । ତାହାହେଲେ ସେ ଅଂଶ ଜଳ ପୂର୍ଣ୍ଣ ହେବା ମାତ୍ରେ ମାଛ ରହିବା ପାଇଁ ସୁବିଧା ହେବ ଓ ସେଥିରେ ମାଛ ମହଜୁଡ କରି ରଖାଯାଇ ପାରିବ । ଜଳାଶୟର ଅତି ଗଭୀରିଆ ଜାଗାରେ ଗୋଟିଏ ନାଳ ଖୋଳାହେଲେ ଜଳ ଅଭାବ ବେଳେ ମାଛମାନେ ସେଠାରେ ଆଶ୍ରୟ ନେଇପାରିବେ ।

(ଚ) ଯଦି ଜଳ ନିଷ୍କାସନ ପଥ ନିୟନ୍ତ୍ରିତ ହୁଏ, ତାହାହେଲେ ଜଳର ସ୍ତର ହ୍ରାସ ଓ ବୃଦ୍ଧି କରି ରଖା ଯାଇପାରିବ ।

ଉପରୋକ୍ତ ଉପାୟମାନଙ୍କ ମଧ୍ୟରେ 'ପାରିସ ଗ୍ରୀନ'ର ବ୍ୟବହାର ସମ୍ଭବତଃ ସବୁଠାରୁ କାର୍ଯ୍ୟକାରୀ, ଏହା ଦ୍ୱାରା ବ୍ୟୟପରିମାଣ ଅପେକ୍ଷାକୃତ କମ୍ ଓ ଏହାକୁ ପ୍ରୟୋଗ କରିବା ଖୁବ୍ ସହଜ ।

---

## ୮ ମେଲେରିଆର କୃଷି ସହିତ ସଂପର୍କ

ଭାରତ ଗୋଟିଏ କୃଷି ପ୍ରଧାନ ଦେଶ । ବିଶିଷ୍ଟ 'ଆନୋଫେଲିସ୍' ଜାତୀୟ ମଶା ଦ୍ୱାରା ବାହିତ ଜୀବାଣୁ ମେଲେରିଆ ରୋଗର କାରଣ ହେଲେହେଁ ମେଲେରିଆର ଉତ୍ପତ୍ତି ଓ କୃଷିର ଉନ୍ନତି ବିପରୀତ ଅନୁପାତରେ ଗୋଟିଏ ଠାରୁ ଅନ୍ୟଟି ପୃଥକ୍ ଜମିରେ ଘନ ଘନ ଫସଲର ଅଦଳବଦଳ କରିବା ଦ୍ୱାରା ଓ ସେଥିରେ ମଧ୍ୟ ପରିଷ୍କାର ପାଣି ରହେ ଏବଂ ଜଳାଶୟମାନ ପରିଷ୍କାର ରଖାଯାଏ ଏବଂ ସେଥିରେ ଯଥେଷ୍ଟ ପରିମାଣରେ ଜୀବାଣୁ ଖାଇ ଯାଉଥିବା ମାଛ ଓ ଅନ୍ୟାନ୍ୟ ଜାତୀୟ ମାଛ ରହେ ଓ ଯଦି ନିକଟରେ ଖାତ ଅସ୍ୱାସ୍ଥ୍ୟକର ଜଳ ଜମା ହୋଇ ନରହେ କିମ୍ବା ଲୁପ୍ତନଦୀର ଶଯ୍ୟାରେ ବା ଧାରରେ ପଟୁଆ ଉଚ୍ଚ ହୋଇଯିବା ଯୋଗୁଁ ପାଣି ଜମେ ତାହାହେଲେ ମେଲେରିଆ ରୋଗ ହେବ ନାହିଁ । ଭାରତରେ ନଦୀର ସାଗର ସଙ୍ଗମ ଅଞ୍ଚଳରେ

ଯଦି ଜଳ ଉତ୍ତମ ରୂପେ ସ୍ରୋତାକାରରେ ପ୍ରବାହିତ ହେଉ ଥାଏ ଏବଂ ଜମିମାନ ବନ୍ୟାଜଳ ଧୌତ ହେଉଥାଏ ଏବଂ ଶେଷରେ ସେହି ଜମିବାଟେ ଜଳ ଯାଇ ସମୁଦ୍ରରେ ପଡ଼ୁଥାଏ ତାହାହେଲେ ସେହି ଅଞ୍ଚଳର ଜମି ଉର୍ବର ହୁଏ; ଅଉ ସେ ଅଞ୍ଚଳରେ ମେଲେରିଆ ଜାତ ହୁଏ ନାହିଁ । 'ରକ୍‌ଫେଲର ଫାଉଣ୍ଡେସନ' ( Rockefeller foundation) ନାମକ ଅନୁଷ୍ଠାନର ଡାକ୍ତର 'ହେକେଟ୍' (Dr. Hacket) ରେପୋର୍ଟରୁ ବର୍ତ୍ତମାନ ଜଣାଯାଏ ଯେ ଇଟାଲିର ଦକ୍ଷିଣ ଅଞ୍ଚଳରେ ଅସଂଖ୍ୟ ମେଲେରିଆ ଜୀବାଣୁ ବାହକ ଆନୋଫିଲେସ ଜାତୀୟ ମଶା ଥିଲେ ମଧ୍ୟ ସେଠାରେ ଏବେ ସୁଦ୍ଧା ମେଲେରିଆ ଆଦୌ ଦେଖାଯାଏ ନାହିଁ । 'ଆଞ୍ଜେଲୋ ସେଲି' (Angello Selly) ନାମକ ଜଣେ ସାହେବ ବହୁ ବର୍ଷ ପୂର୍ବେ ଏହା ନିରୀକ୍ଷଣ କରି ତାର କାରଣ ସ୍ୱରୂପ ଉଲ୍ଲିଖିତ ମତ ଘୋଷଣା କରିଛନ୍ତି । ତାହାଙ୍କ ମତରେ ବିକ୍ଷିପ୍ତ ଜମିଖଣ୍ଡମାନ ଏକାଠି ମିଶାଇ ଦେଇ ସେଥିରେ ହୁଇଁ ଜାତୀୟ ଫସଲକୁ ଘରେ ଗୋରୁ ଗାଈ ବାନ୍ଧି ଖୁଆଇବା ଭଳି ପୁଣି ଖାଇବାକୁ ଛାଡ଼ି ଦିଆଗଲେ ଏବଂ ଖାଦ୍ୟ ଜମାଇ ଖାଇବାକୁ ଦେବା ଭଳି ଗାଈ ଗୋରୁ ପ୍ରଭୃତି ଗୃହ ପାଳିତ ପ୍ରଣାଳୀ ଅବଲମ୍ବନ କରାଗଲେ ଯେପରି ଆନୋଫେଲିସ ମଶାଗୁଡ଼ିକ ମନୁଷ୍ୟମାନଙ୍କୁ କାମୁଡ଼ିବା ପରିବର୍ତ୍ତେ ଗୃହପାଳିତ ଜନ୍ତୁମାନଙ୍କୁ କାମୁଡ଼ି ସେମାନଙ୍କ ରକ୍ତ ପିପାସା ଶାନ୍ତ କରିବେ । ଏହା ଫଳରେ ମଶାମାନଙ୍କ କାମୁଡ଼ିବା ଆୟୁଧ (Rostum) ଘନ ଘନ କାମୁଡ଼ା ଫଳରେ ଅନ୍ୟ ଆକାର ଧରିବ ଏବଂ ତାଦ୍ୱାରା ସେମାନେ ଆଉ ମନୁଷ୍ୟମାନଙ୍କୁ କାମୁଡ଼ିବା ପାଇଁ ଅକ୍ଷମ ହୋଇ ପଡ଼ିବେ । ଯଦି ଜମିରୁ ଜିନିଷ ଥରେ ସଫା କରିଦିବାପରେ ତାହାକୁ ଦରଦାମ ନେଇ ନିତି ଯୋଡ଼ିତା ଚୁଲିଥିବା ହାଟ ବଜାରରେ ବିକ୍ରି କରିବା ପରିବର୍ତ୍ତେ ପରିବାରଙ୍କ ଖାଇବା ପାଇଁ ଦରକାର ହୋଇଥିବା ପନିପରିବା ଜାତି କରାଇ ତାହାକୁ ବାଡ଼ି ବଗିଚ୍ଚା କରିବାକୁ

ଲୋକେ ଦାୟିତ୍ୱ ନେଇ ଯଦି ଆପେ ଉତ୍ସାହ ଦେଖାନ୍ତି ଏବଂ ଯଦି ଗୃହପାଳିତ ଜନ୍ତୁମାନଙ୍କ ଆହାର ପାଇଁ ମୁଗ ଜାତୀୟ ପଶୁଖାଦ୍ୟ ଓ ବିଭିନ୍ନ ଜାତୀୟ ତୃଣ ଯଥା ନେପିୟର ଘାସ ପରି ଖାଦ୍ୟ କେତେକ ଜମିରେ ଉତ୍ପନ୍ନ କରାଇ ଗୋରୁମାନଙ୍କ ଆହାର ବାହାରୁ ଖରିଦ ନକରି ଅନେକ ପୟସ୍ୱିନୀ ଗାଈଙ୍କୁ ଖାଦ୍ୟ ଅଳ୍ପ (ପିଡ଼ିଆ ଓ ସାରବାନ ଖାଦ୍ୟ ଛଡ଼ା) ଯୋଗାଇ ପାରନ୍ତି, ତେବେ ସେହି ପରିବାରଟି ଖାଦ୍ୟ-ସଙ୍କଟରେ ପୂର୍ଣ୍ଣ ନିର୍ଭରଶୀଳ ହୋଇ ପାରନ୍ତି । ପୁଣି ସ୍ୱଚ୍ଛନ୍ଦରେ ରହିବା ପାଇଁ ଏହି କେତୋଟି ବିଷୟ ପ୍ରତି ଦୃଷ୍ଟି ଦେବା ଉଚିତ । ଜଳାଶୟମାନଙ୍କରୁ ସମସ୍ତ ପ୍ରକାର ଜଳଜ ତୃଣ ଓ ଉର୍ଦ୍ଧ୍ୱଦେଶରୁ ଲମ୍ବିଥିବା ଜଙ୍ଗଲମୟ ତରୁଲତା ଓ ଶାଖାମାନଙ୍କୁ ବାହାର କରିବା ବିଧେୟ । ସେସବୁ ବାହାର କରି ଜଳାଶୟଟି ସଫା ହେଲେ ସେଥିରେ ଉତ୍ତମ ମଧୁର ମାଛ ପୋଷିବା ଉଚିତ । ତଦ୍ଦ୍ୱାରା ସେ ସଦ୍ୟ ଫଳମୂଳ, ପରିବା, ଦୁଧ, ମାଛ ଓ ଅନ୍ୟାନ୍ୟ ନିଜ ଜମିରୁ ଉତ୍ପନ୍ନ ଦ୍ରବ୍ୟ ଦ୍ୱାରା ସୁଖରେ ଓ ତୃପ୍ତିରେ ଜୀବନ ଯାପନ କରିବେ ତାହାନୁହେଁ, ସେଥି ସଙ୍ଗେ ଜଙ୍ଗଲ କାଟିବା ଓ କିରାସିନ ଢାଳିବା ପ୍ରଭୃତି ବଡ଼ ଖର୍ଚ୍ଚରୁ ଅବ୍ୟାହତି ପାଇ ପାରିବେ । ଏହି ସଦ୍ୟ ଓ ପୁଷ୍ଟିକର ଫଳ ପରିବାରେ ମୂଲ୍ୟବାନ ଖାଦ୍ୟସାର ଥାଏ । ତାହା ବ୍ୟବହାର କଲେ ସମସ୍ତ ପ୍ରକାର ରୋଗ ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ଶରୀରରେ ଗୋଟାଏ ଶକ୍ତିର ସଞ୍ଚାର ହୋଇପାରିବ ।

**ଧାନ୍ୟକ୍ଷେତ:**—ମେଲେରିଆ ରୋଗ ଦୃଷ୍ଟିରୁ ସାଧାରଣତଃ ଧାନ୍ୟକ୍ଷେତମାନ ବିପଦ ଜନକ । ଯେଉଁ ପାହାଡ଼ିଆ ଅଞ୍ଚଳର ଜମିରେ ସର୍ବଦା ଜଳ ଅବିରାମ ଭାବରେ ଗଳୁଥାଏ ସେହି ଜମି-ମାନଙ୍କ ବ୍ୟତୀତ ଅନ୍ୟାନ୍ୟ ସାଧାରଣ କ୍ଷେତ ବିପଜ୍ଜନକ । ବିଶେଷତଃ ଜଳ ପ୍ରବାହିତ ହେଉଥିବା ଝରଣା ଦେହରେ ଛୋଟ ଛୋଟ କୂଳିଆ

ଜମିମାନ ପକାଇ ଧାନ ଚାଷ କରିବା ବଡ଼ ବିପଦଜନକ । ଏ ସମସ୍ୟା ଖୁବ କଠିନ ଏବଂ କୃଷି ସଂକ୍ରାନ୍ତୀୟ ଉନ୍ନତ ଶିକ୍ଷାବଳରେ ବା ଆଇନ ବଳରେ ଚାଷ ପ୍ରଣାଳୀର ପରିବର୍ତ୍ତନ କରାଗଲେ ଏହାର ସନ୍ତୋଷ-ଜନକ ସମାଧାନ କରାଯାଇ ପାରିବ । 'ଜାଭା' ଦେଶରେ ଏକ ପ୍ରକାର ଚାଷ ପ୍ରଣାଳୀ ଆଇନ ବଳରେ କାର୍ଯ୍ୟକାରୀ ହେଉଥିବାର ଦେଖାଯାଏ ; ସେହି ଦେଶରେ ଗୋଟାଏ ଅଞ୍ଚଳର ଜମିମାନ ସପ୍ତାହର ଗୋଟିଏ ଦିନ ଶୁଷ୍କ ରଖିବା ପାଇଁ ବ୍ୟବସ୍ଥା ରହିଛି । ଅସ୍ଥାୟୀ ବ୍ୟବସ୍ଥା ରୂପେ 'ପାରିସ ନୀଳ' ଜମି ଦେହରେ ଦିଆଯିବାର ବନ୍ଦୋବସ୍ତ ସେଠାରେ ଅଛି । ତଦ୍ବାରା ଫସଲ ହାନି ଘଟିବାର କୌଣସି ଆଶଙ୍କା ନଥାଏ । ଏହି ଚୂର୍ଣ୍ଣ ସବୁଠାରୁ ଉପାଦେୟ ଓ ସହଜ-ଲଭ୍ୟ । ସମତଳ ଜମି-ମାନଙ୍କ ମଧ୍ୟରୁ ଯେଉଁ ସବୁ ପଡ଼ିଆ ଓ ଚାଷ ହୋଇ ନଥିବା ଥାକ ଥାକ ଥିବା ଜମିରେ ବନ୍ୟା ଜଳ ସଞ୍ଚିତ ହୋଇ ରହିଥାଏ ସେହି ଜମିମାନ ରୋଗ ଉତ୍ପାଦନ ଦୃଷ୍ଟିରୁ ବିଶେଷ ମାରାତ୍ମକ । ସେହି ସବୁ ଜମିରେ ତୈଳ ଢାଳିବା ଉଚିତ ।

---

# ୯ ମେଲେରିଆର ସଂକ୍ରମଣ

ଜୀବାଣୁ ଦ୍ୱାରା ଦୂଷିତ ମଶା ଦ୍ୱାରା ମେଲେରିଆ ବ୍ୟାଧି ପ୍ରାୟ ଦୁଇମାସ ଯାଏ ସଂକ୍ରମିତ ହୁଏ । ତା'ପରେ ତା ଦେହରେ ବିଷାକ୍ତ ଜୀବାଣୁ ଥିଲେ ସୁଦ୍ଧା ସେଗୁଡ଼ିକ ଆଉ ବିଷାକ୍ତ ନୁହନ୍ତି । ଦେହରେ ବିଷାକ୍ତ ଜୀବାଣୁ ପୂର୍ଣ୍ଣ ଥିଲେ ସୁଦ୍ଧା ମଶାମାନଙ୍କର କୌଣସି କ୍ଷତି ଘଟେ ନାହିଁ । ମେଲେରିଆ ଜୀବାଣୁ ବୃଦ୍ଧିର ଦୁଇଟି ସ୍ତର ଦେଖାଯାଏ । ଗୋଟିଏ ଋତୁ ବିହୀନ ସ୍ତର ଓ ଅନ୍ୟଟି ଋତୁ ବିଶିଷ୍ଟ । ଋତୁ ବିହୀନ ସ୍ତର ମନୁଷ୍ୟ ଦେହରେ ବୃଦ୍ଧି ପାଇଥାଏ ଏବଂ ଋତୁକ୍ରିୟା ସ୍ତରର ଉନ୍ନତ ମଶାମାନଙ୍କ ଦ୍ୱାରା ସଂଘଟିତ ହୋଇଥାଏ । ଅବସ୍ଥା

କ୍ରମେ ଜୀବାଣୁମାନେ ବୃଦ୍ଧିପ୍ରାପ୍ତ ହୋଇ ଗୋଟିଏ ଉନ୍ନତ ଅବସ୍ଥାକୁ ନ ଆସିବା ଯାଏ ମଶା କାମୁଡ଼ା ଦ୍ୱାରା ରୋଗ ଗୋଟାଏ ଲୋକ ଦେହରୁ ଅନ୍ୟଲୋକର ଦେହକୁ ସଂକ୍ରମିତ ହୁଏ ନାହିଁ। ସେହି ଅବସ୍ଥାକୁ ଆସିବା ପାଇଁ ପ୍ରାୟ ଦୁଇ ସପ୍ତାହ ଲାଗେ। ରକ୍ତ ଶୋଷଣ କରିବା ପୂର୍ବରୁ ବୃଦ୍ଧିପ୍ରାପ୍ତ ହୋଇ ସେପରି ଗୋଟାଏ ନିର୍ଦ୍ଦିଷ୍ଟ ଅବସ୍ଥାରେ ଉପନୀତ ନହେବା ଯାଏ ( ସ୍ତ୍ରୀ ଓ ପୁରୁଷ ଆକାର ବିଶିଷ୍ଟ ନହେଲେ ) ଜୀବାଣୁ ଗୁଡ଼ିକ ମଶା ଦେହରେ ବଞ୍ଚି ରହିପାରନ୍ତି ନାହିଁ। ରୋଗୀକୁ ମଶା କାମୁଡ଼ିବାର ପ୍ରାୟ ତିନି ସପ୍ତାହ ପରେ କିମ୍ବା ମେଲେରିଆ ଆକ୍ରମଣର ପ୍ରାୟ ଦଶଦିନ ପରେ ଯେତେବେଳେ ଜ୍ୱରର ବିଭିନ୍ନ ଲକ୍ଷଣମାନ ପ୍ରଥମେ ଦେଖାଦିଏ ସେତେବେଳେ ଏହି ଅବସ୍ଥା ଆସେ।

ଉପରୋକ୍ତ ବିବରଣୀରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ମଶାମାନେ ଦୁଇଜଣଙ୍କର ରକ୍ତ ପିଇବାକୁ ନପିବା ପର୍ଯ୍ୟନ୍ତ ରୋଗ ସଂକ୍ରମଣ କରି ପାରନ୍ତି ନାହିଁ। ଏଥିପାଇଁ ମଶାମାନଙ୍କ ପ୍ରାୟ ଦଶଦିନ ସମୟ ଲାଗେ। ସୁତରାଂ ମେଲେରିଆ ସଂକ୍ରମଣ ବିଶେଷ ଭାବରେ ମଶାମାନଙ୍କ ଜୀବନ-କାଳର ସୀମା ଉପରେ ଏବଂ ସେମାନଙ୍କର ରକ୍ତ ଶୋଷଣ ପିପାସା ଓ ସେମାନଙ୍କୁ କାମୁଡ଼ିବା ପାଇଁ ସୁଯୋଗ ଉପରେ ନିର୍ଭର କରେ। କେବଳ 'ଅନୋ ଫେଲିସ୍' ଜାତୀୟ ମଶା କାମୁଡ଼ିଲେ ଯେ ମେଲେରିଆ ଜାତ ହୁଏ ତାହା ନୁହେଁ, ରକ୍ତରେ ମେଲେରିଆ ଜୀବାଣୁ ଥିବା ରୋଗୀର ରକ୍ତ ପାନ କରିବା ପରେ ଯଦି ମଶାଟି ଅନ୍ତତଃ ଦଶ ଦିନ ବଞ୍ଚି ରହେ ତାହାହେଲେ ସେ କେବଳ ବିପଦ ଜନକ।

ମୂଳରେ ନିମ୍ନଲିଖିତ କାରଣମାନଙ୍କ ଯୋଗୁଁ ମେଲେରିଆ ସଂକ୍ରମିତ ହୋଇଥାଏ।—

( ୨୯ଶ ଚିତ୍ର ):—

(୧) ରୋଗ ସଂକ୍ରାମକ କେନ୍ଦ୍ର ଅର୍ଥାତ୍ ରକ୍ତରେ ବହୁସଂଖ୍ୟକ ସ୍ତ୍ରୀ ଓ ପୁରୁଷ ଆକାର ବିଶିଷ୍ଟ ମେଲେରିଆ ଜୀବାଣୁ ରହିବା ଗୋଟାଏ

ମେଲେରିଆ ପୀଡ଼ିତ ପରିବାରର ଛୋଟ ଶିଶୁମାନେହିଁ କେବଳ ରୋଗ ସଂକ୍ରମଣ ପାଇଁ ବିଶେଷ ପକ୍ଷେ ସଂକ୍ରମଣର କେନ୍ଦ୍ରସ୍ଥଳୀ ସ୍ୱରୂପ କାର୍ଯ୍ୟ କରନ୍ତି ।

(୨) ବହୁସଂଖ୍ୟାରେ ଅନ୍ତତଃ ରୋଗ ସଂକ୍ରମଣ ପଟୁ ଏକ ଜାତୀୟ ଆନୋଫିଲିସ ମଶା ଦେଖାଯିବ । ଯେହେତୁ ଏ ଜାତୀୟ ମଶାମାନେ ରୋଗ ସଞ୍ଚାର କରି ପାରନ୍ତି ଏବଂ ଏମାନଙ୍କର ମନୁଷ୍ୟମାନଙ୍କୁ ଘନ ଘନ କାମୁଡ଼ିବା ପାଇଁ ଯଥେଷ୍ଟ ସୁଯୋଗ ଓ ପ୍ରବୃତ୍ତି ଥାଏ ।

(୩) ଯୌନକ୍ରିୟା ଦ୍ୱାରା ମଶା ଦେହରେ ମେଲେରିଆ ଜୀବାଣୁ ବୃଦ୍ଧିହେବା ପାଇଁ ଉପଯୁକ୍ତ ଅନୁକୂଳ ଜଳବାୟୁ ଯାହାଦ୍ୱାରା ମଶାମାନେ ସଂକ୍ରମିତ ଜୀବାଣୁ ଅବସ୍ଥାପନ୍ନ ହେବା ପର୍ଯ୍ୟନ୍ତ ଜୀବିତ ରହି ପାରିବେ ।

(୪) ରୋଗ ସଂକ୍ରମଣ ପାଇଁ ଉପଯୁକ୍ତ ଅବସ୍ଥାପନ୍ନ ଲୋକ ।

---

# ୧୦ ମେଲେରିଆର-ଲକ୍ଷଣ

ସାଧାରଣତଃ ବର୍ଷାଋତୁ ପରେ ମେଲେରିଆର ଆକ୍ରମଣ ଦେଖାଯାଏ । କିନ୍ତୁ ବର୍ଷର ଯେ କୌଣସି ସମୟରେ ମଧ୍ୟ ଜ୍ୱର ଲେଉଟି ପୁଣି ଆକ୍ରମଣ କରିଥାଏ । ମେଲେରିଆ ଜୀବାଣୁ ଶରୀର ମଧ୍ୟରେ ଦୀର୍ଘ-କାଳ ରହନ୍ତି ଏବଂ ସୁଯୋଗ ପାଇଲେ ବୃଦ୍ଧିପ୍ରାପ୍ତ ହୁଅନ୍ତି । ଜଟିଳ ଅବସ୍ଥା ପ୍ରାପ୍ତହୋଇ ନଥିବା ମେଲେରିଆ ରୋଗର ଲକ୍ଷଣ ନିର୍ଦ୍ଧାରଣ କରିବା କଷ୍ଟକର ନୁହେଁ । ଜ୍ୱର ଲେଉଟିବାରୁହିଁ ମେଲେରିଆ ରୋଗ ବୋଲି ଜାଣିବାର ଏକ ବଡ଼ ଲକ୍ଷଣ । ପ୍ରତ୍ୟେକ ତୃତୀୟ ଦିବସରେ ଜ୍ୱର ଆକ୍ରମଣ କଲେ ତାକୁ 'ଦୟାଶୀଳ ନିଦାନାତ୍ମକ' (Benign tertian) ମେଲେରିଆ ବା ପାଳିଜ୍ୱର ବୋଲି କୁହାଯାଏ । ଆଉ ଗୋଟାଏ ପ୍ରକାର ମେଲେରିଆ ଦେଖାଯାଏ ଯହିଁରେ ପ୍ରତି ଚତୁର୍ଥ

ଦିବସରେ ଜ୍ୱର ଆକ୍ରମଣ କରିଥାଏ । ଏ ଜାତୀୟ ମେଲେରିଆକୁ ଚତୁର୍ଥଦିନାତ୍ମକ(Quartain)ମେଲେରିଆ କୁହାଯାଏ । ପୁଣି ଆଉ ଏକ ଜାତୀୟ ମେଲେରିଆକୁ 'ଅର୍ଦ୍ଧ ତ୍ରିଦିନାତ୍ମକ' (Sub tertian) ଓ 'କ୍ଷତି କାରକ ତ୍ରିଦିନାତ୍ମକ' (Malignant tertian) କୁହାଯାଏ । ଦୁର୍ଭାଗ୍ୟ ବଶତଃ ଏହି ମେଲେରିଆର ପ୍ରକୋପ ବୋମ୍ବେ ପ୍ରଦେଶରେ ଖୁବ୍ ବେଶୀ । ଏହି ଜାତୀୟ ମେଲେରିଆରେ ଜ୍ୱର ପ୍ରାୟ ପ୍ରତି ଦିନ ଆସେ । ରୋଗ ଟିକିଏ ଜଟିଳ ଅବସ୍ଥାକୁ ଆସିଲେ ନିର୍ଦ୍ଦିଷ୍ଟ ସମୟରେ ଜ୍ୱରର ଆକ୍ରମଣ ଦେଖାଗଲେ ତାହାକୁ ଗୋଟାଏ ବିଶିଷ୍ଟ ଲକ୍ଷଣ ଧରାଯାଏ ନାହିଁ । ବିନାଇନ୍ ମେଲେରିଆ ରୋଗୀକୁ ସବୁଦିନେ ଜ୍ୱର ହୁଏ । ଜ୍ୱର ଆକ୍ରମଣ ପୂର୍ବେ କମ୍ପ ଜାତ ହେବା ମେଲେରିଆ ଜ୍ୱରରେ ଯେପରି ଦେଖାଯାଏ ଅନ୍ୟାନ୍ୟ ଜ୍ୱର ଆକ୍ରମଣରେ ସେପରି ଦେଖାଯାଏ ନାହିଁ । ସେହିପରି ଜ୍ୱର ପରେ ଝାଳ ବୋହିବା ମେଲେରିଆ ଜ୍ୱରର ଗୋଟାଏ ଲକ୍ଷଣ । ମେଲେରିଆର ଗୋଟାଏ ବିଶେଷ ଲକ୍ଷଣ ଏହି ଯେ ରୋଗୀକୁ ପ୍ରାୟ ସବୁବେଳେ ସକାଳ ସମୟରେ ଜ୍ୱର ଆକ୍ରମଣ କରିଥାଏ । ଅଭ କେତେକ ଜ୍ୱରରେ ଝାଳ ବହେ । ଅଥଚ ଜ୍ୱର ସାଧାରଣତଃ ଉପରବେଳା ଆକ୍ରମଣ କରିଥାଏ । ରୋଗୀ ମେଲେରିଆ ଜ୍ୱରର ପୀଡ଼ିତ ହେବା କିଛି ଦିନ ପରେ ତାର ପ୍ଲୀହା ବୃଦ୍ଧି ପାଏ । ମେଲେରିଆ ଆକ୍ରମଣର ପ୍ରଥମ ଅବସ୍ଥାରେ ପ୍ଲୀହା ଖୁବ୍ କୋମଳ ବୋଧ ହୁଏ । ଜ୍ୱର ଦୀର୍ଘ କାଳ ସ୍ଥାୟୀ ହେଲେ ପ୍ଲୀହା କ୍ରମେ କଠିନ ହୋଇଯାଏ ।

(୨) ପୁନଃ ପୁନଃ ମେଲେରିଆ ଆକ୍ରମଣ ଫଳରେ ଦେହର ରକ୍ତ କ୍ଷୟ ହୋଇଯାଏ ଏବଂ ଉପଯୁକ୍ତ ଚିକିତ୍ସା ଅଭାବରେ ରୋଗୀ ବିବର୍ଣ୍ଣ ଓ ରକ୍ତଶୂନ୍ୟ ଦେଖାଯାଏ ଏବଂ କୌଣସି କାର୍ଯ୍ୟ କରିବା ପାଇଁ ଶକ୍ତି ଆସେ ନାହିଁ ।

(୩) ପରିଣତ ବୟସ୍କ ବ୍ୟକ୍ତିମାନଙ୍କ ଅପେକ୍ଷା ମେଲେରିଆ ଶିଶୁମାନଙ୍କୁ ବିଶେଷ ଭାବେ ଆକ୍ରମଣ କରେ । କାରଣ ବାଲ୍ୟାବସ୍ଥାରେ ମେଲେରିଆ ଆକ୍ରମଣରୁ ରକ୍ଷାପାଇବା ପାଇଁ ପ୍ରକୃତି ପିଲାମାନଙ୍କୁ ଶକ୍ତି ଦାନ କରି ନଥାଏ କିମ୍ବା ସେମାନେ ନିଜେ ସେପରି ଶକ୍ତି ଅର୍ଜନ କରିପାରି ନଥାନ୍ତି । ମାତ୍ର ବୟସ ବୃଦ୍ଧି ହେବା ମାତ୍ରେ ସେମାନଙ୍କର ଶରୀର ମେଲେରିଆ ଆକ୍ରମଣରେ କେତେକ ପରିମାଣରେ ଅଭ୍ୟସ୍ତ ହୋଇ ପଡ଼େ । ସାମୟିକ ଭାବେ ଆକ୍ରମଣ କରୁଥିବା କେତେକ କମ୍ପଜ୍ୱରରେ ପ୍ଲୀହା ବିଶେଷଭାବେ ବୃଦ୍ଧି ପାଏ । ଏହା ପୁରାତନ ମେଲେରିଆର ଗୋଟିଏ ବିଶିଷ୍ଟ ଲକ୍ଷଣ ।

---

# ୧୧ ମେଲେରିଆର ବିଭିନ୍ନ ରୂପ

(୧) 'ପ୍ରାତ୍ୟାହିକ' (Quotidian)— ଏହିଭଳି ମେଲେରିଆରେ ଜ୍ୱର ଦିନ ମଧ୍ୟରେ ଥରେ ଆସେ ।

(୨) 'ଦ୍ୱିଦିନାତ୍ମକ' (Tertian)—ଏଥିରେ ଜ୍ୱର ଦୁଇ ଦିନରେ ଥରେ ଆକ୍ରମଣ କରେ ।

(୩) 'ଚତୁଃ ଦିନାତ୍ମକ (Quartan)—ଏହି ମେଲେରିଆରେ ଜ୍ୱର ପ୍ରତି ଚତୁର୍ଥ ଦିନ ଦେଖାଦିଏ ।

(୪) 'ଦ୍ୱି ପ୍ରାତ୍ୟହିକ (Double Quotidian)—ଏଥିରେ ଜ୍ୱର ଦିନ ମଧ୍ୟରେ ଦୁଇ ଥର ଆକ୍ରମଣ କରେ ।

(୫) ପାଳି ଜ୍ୱରରେ ଜ୍ୱର ଆକ୍ରମଣ ଅନିଶ୍ଚିତ ଭାବେ ଆସେ । ପାଳି ଜ୍ୱର ପରବର୍ତ୍ତୀ ଦିନ ଯେତେବେଳକୁ ଆସିବାର ଆଶଙ୍କା ଥାଏ ସେତେବେଳକୁ ନଆସି ଟିକିଏ ଆଗରୁ ବା କେତେକ ସମୟ ପରେ ଆକ୍ରମଣ କରେ ।

---

## ୧୨ ମେଲେରିଆର ବିଭିନ୍ନ ଅବସ୍ଥା

ଅକ୍ରମଶରେ ବିଭିନ୍ନ ଅବସ୍ଥା (ସେଟର ପ୍ରଥମାବସ୍ଥାରେ ଦେଖାଯାଏ । )

(୧) 'ପ୍ରକୋପ ଅବସ୍ଥା' (Rigor stage)—ଗୋଡ଼ ହାତ ଅଦ ଥଣ୍ଡା ହୋଇଯାଏ ଏବଂ ହଠାତ୍ ବିଶେଷ କମ୍ପ ପରେ ଶରୀର ଶୀତରେ ଥରି ଉଠେ । ( ୩୦ଶ ଚିତ୍ର ଦ୍ରଷ୍ଟବ୍ୟ )

(୨) 'ଉଷ୍ମ ଅବସ୍ଥା' (Hot stage)—ଉପରେ କୁହାଯାଇ ଥିବା ଅବସ୍ଥା ପରେ ରୋଗୀ ଉତ୍ତାପ ବୋଧ କରେ । ସେତେବେଳେ ସେ ତାର ପରିଧେୟ ଲୁଗା ଇତ୍ୟାଦି ବାହାର କରି ଫିଙ୍ଗି ଦିଏ । ଏ ଅବସ୍ଥାରେ ଶରୀରର ଉତ୍ତାପ ଖୁବ୍ ବେଶୀ ରହେ ଏବଂ ଶରୀର ମଧ୍ୟରେ ଥିବା ରୋଗର ଜୀବାଣୁ ଫାଟି ଥାଏ ଏବଂ ରକ୍ତକୋଷ ମଧ୍ୟରେ ଏହାହିଁ ସେମାନଙ୍କର ବୃଦ୍ଧି ପାଇବାର ପ୍ରାରମ୍ଭ ସମୟ ।

(୩) 'ସ୍ୱେଦ ଅବସ୍ଥା' (Sweating stage)—ଏହି ଅବସ୍ଥାରେ ରୋଗୀର ଦେହରୁ ବହୁତ ଝାଳ ବହେ ଏବଂ ରୋଗୀକୁ ଦୁର୍ବଳ ବୋଧ କରୁଥିଲେହେଁ ତାକୁ ଠିକ୍ ସୁଖ ଲାଗେ ।

---

## ୧୩ ମେଲେରିଆର କାରଣ

ରକ୍ତରେ ଆଣୁବୀକ୍ଷଣିକ ଜୀବାଣୁ ଥିବା ଯୋଗୁଁ ମେଲେରିଆ ଜ୍ୱର ଜାତ ହୁଏ । ମେଲେରିଆ ଭାରତର ଗୋଟାଏ ଅତି ସାଧାରଣ ରୋଗ ଏବଂ ଏହାକୁ ଜ୍ୱର ନାମରେ ଅଭିହିତ କରାଯାଇ ଥାଏ । ମନୁଷ୍ୟ ଜାତିର ଏହା ଗୋଟାଏ ଭୀଷଣ ଶତ୍ରୁ । ମଶାମାନେ ଘରେ, ଘରକାନ୍ଥ ପାଖରେ, (୩୧ଶ ଚିତ୍ର) ପୋଖରୀରେ, ଘଞ୍ଚ ନର୍ଦ୍ଦମା-ମାନଙ୍କରେ ଓ ଅନ୍ୟାନ୍ୟ ଜଳସିକ୍ତ ଥିବା ସ୍ଥାନମାନଙ୍କରେ (୩୨ଚିତ୍ର) ବାସ କରନ୍ତି । ସେମାନେ ବନ୍ଦ ପାଣିରେ ଓ ମଟ୍ଟର ଗାତରେ

ପ୍ରବାହିତ ହେଉଥିବା ଜଳସ୍ରୋତରେ ଅଣ୍ଡା ଦିଅନ୍ତି ଏବଂ ସେମାନେ ମେଲେରିଆ ବିସ୍ତାର କରନ୍ତି । ସବୁ ମଶାଗୁଡ଼ିକ ମେଲେରିଆବାହକ ନୁହନ୍ତି । କେବଳ 'ଅନୋଫେଲିସ' (Anopheles) ନାମକ ଏକ ଜାତୀୟ ମଶା ରୋଗ ବିସ୍ତାର କରନ୍ତି । ସ୍କୁଲରେ ପଢ଼ିବାକୁ ଗଲେ ଆନୋଫେଲିସ ଜାତୀୟ ମଶାଙ୍କୁ ଚିହ୍ନିବାର ପ୍ରଧାନ ଲକ୍ଷଣ ହେଉଛି ଯେ ସେମାନଙ୍କର ଡେଣାରେ ଦାଗ ଥାଏ ଓ ସେମାନଙ୍କର ବସିବାର ଗୋଟାଏ ସ୍ୱତନ୍ତ୍ର ଢଙ୍ଗ ଅଛି । ଅର୍ଥାତ୍ ବସିବାବେଳେ ଏହି ମଶାମାନେ ଭୂମି ସହିତ କୋଣ କରି ବସନ୍ତି—ଜଣାଯାଏ ଯେପରି କି ସେମାନେ ମୁଣ୍ଡ ତଳକୁ ରଖି ଠିଆ ହୋଇଛନ୍ତି କେବଳ ମାଈ ମଶାମାନେହିଁ କାମୁଡ଼ିଥାନ୍ତି । ଏମାନେ ସମସ୍ତେ ସୂର୍ଯ୍ୟାସ୍ତ ପରେ କାମୁଡ଼ନ୍ତି ସତ କିନ୍ତୁ ଆଉ କେତେକ ଜାତୀୟ ମଶା ଅଛନ୍ତି ଯେଉଁମାନେ କି ଦିନବେଳେ ସୁଦ୍ଧା କାମୁଡ଼ନ୍ତି ।

(୨) ଜଣେ ସୁସ୍ଥ ଓ ସବଳ ଲୋକଙ୍କୁ ଯଦି 'ଆନୋଫେଲିସ' ମାଈ ମଶାମାନେ କାମୁଡ଼ନ୍ତି ତାହାହେଲେ ସେମାନଙ୍କର କାମୁଡ଼ା ଫଳରେ ଦୂଷିତ ଜୀବାଣୁ ରକ୍ତରେ ପ୍ରବେଶ କରେ (୩୩, ୩୪ ଚିତ୍ର ଦ୍ରଷ୍ଟବ୍ୟ) ସେହି ବ୍ୟକ୍ତିକୁ କାମୁଡ଼ିବାର ପ୍ରାୟ ଦଶ ଦିନ ପରେ ସେ ମେଲେରିଆ ଜ୍ୱରରେ ପୀଡ଼ିତ ହୁଏ (୩୫ ଶ ଚିତ୍ର) ଏବଂ ଇତିମଧ୍ୟରେ ଶରୀର ମଧ୍ୟରେ ଅସଂଖ୍ୟ ସାମୟିକ ଜୀବାଣୁ ବୃଦ୍ଧି ପାଇ ଲାଲ ରକ୍ତକଣିକା ସମୂହ ନଷ୍ଟ କରି ପକାଏ ଓ ରକ୍ତହୀନତା ବୃଦ୍ଧି କରେ । (୩୬ଶ ଚିତ୍ର) ଯଦି ରୋଗୀ କିମ୍ବା କ୍ରମେ ରୋଗ ମୁକ୍ତ ହେଉଥିବା ଲୋକ ଯାହାର ରକ୍ତରେ ଜୀବାଣୁ ରହିଛନ୍ତି ତାହାକୁ ମଶା କାମୁଡ଼େ । (୩୭ଶ ଚିତ୍ର) ଏହି ଜୀବାଣୁଗୁଡ଼ିକ ମଶା ଦେହକୁ ଚାଲି ଆସନ୍ତି ଏବଂ ମଶା ଦେହରେ ବିଭିନ୍ନ ଆକାରରେ ବୃଦ୍ଧି ପାଆନ୍ତି । ଏହିଠାରୁ ମଶାମାନେ ରୋଗ ସଞ୍ଚାର କରିବା ଅବସ୍ଥା ପ୍ରାପ୍ତ ହୁଅନ୍ତି । (୩୮ଶ ଚିତ୍ର) ବେଳେ

ବେଳେ ଏହା ଛଡ଼ା ଯେଉଁ କର୍ମ ଜାତ ହୁଏ ଏବଂ ପ୍ଲୀହା ବୃଦ୍ଧିର ଯେଉଁ ସୂଚନା ଦେଖାଯାଏ ଏ ସମସ୍ତ ପୁରାତନ ମେଲେରିଆର ଗୋଟାଏ ବିଶିଷ୍ଟ ଲକ୍ଷଣ । ( ୩୯ଶ ଚିତ୍ର ) । ମେଲେରିଆ ରୋଗୀକୁ ଯଦି ଉପଯୁକ୍ତ ଭାବେ ଚିକିତ୍ସା କରାନଯାଏ ତାହାହେଲେ ତାହାର ଶରୀର ରକ୍ତ ହୀନ ହୋଇ ପଡ଼େ ଏବଂ ଅନ୍ୟାନ୍ୟ ସଂକ୍ରାମକ ରୋଗ ଆକ୍ରମଣ ପାଇଁ ପଥ ଖୋଲି ଦିଏ । ( ୪୦ଶ ଚିତ୍ର ) ।

(ଗ) ମେଲେରିଆ **ଅଜ୍ଞତା** ଦୋଷରୁ ଜାତ ହୁଏ । ମାତ୍ର ଅନେକ ସମୟରେ ସ୍ୱାସ୍ଥ୍ୟରକ୍ଷା ଓ ଅନ୍ୟାନ୍ୟ ସତର୍କ ମୂଳକ ବ୍ୟବସ୍ଥାରେ ଜାଣିଶୁଣି ଅବହେଳା କରିବା ଦ୍ୱାରା ମଧ୍ୟ ମେଲେରିଆ ଜାତ ହୁଏ । ଜନସାଧାରଣଙ୍କ କାର୍ଯ୍ୟ ପ୍ରଣାଳୀ ଦ୍ୱାରା ମଧ୍ୟ କିପରି ମେଲେରିଆ ବ୍ୟାପକଭାବେ ସଂକ୍ରମିତ ହୁଏ ତାହାର ଗୋଟାଏ ବିସ୍ତୃତ ବିବରଣୀ ନିମ୍ନରେ ଦିଆଯାଇଛି ।

**(୧) 'ଗୃହକର୍ମ' (Domestic Activities)**— ନର୍ଦ୍ଦମାର ଅଭାବ, ଖରାପ ପ୍ରଣାଳୀରେ ତିଆରି ହୋଇଥିବା କିମ୍ବା ଉତ୍ତମରୂପେ ତିଆରି ହୋଇ ନଥିବା ନର୍ଦ୍ଦମା, କ୍ଷୁଦ୍ର ବାଟେ ଜଳ ବୋହୁଥିବା ଜଳକୁଣ୍ଡ, ଜଳ ସଞ୍ଚିତ ଜମି, ଜଳକୁଣ୍ଡ, କୂପ, ସୁସଜ୍ଜିତ ପୋଖରୀ, ଝରଣା, ପାଣି ଶୋଷିହୋଇ ଯାଉଥିବା ଜଳଖାତ, ଉଦ୍ୟାନ, ଜଳ ଅନେଷ୍କଶା, ଅବ୍ୟବହାର ଜଳାଶୟ, ଖାଲଢିପ, ସଙ୍କୀର୍ଣ୍ଣ ନାଳ, ମାଂସ ପ୍ରଭୃତି ଆହାର ତଳେ ରଖାଯାଇ ଥିବା ଜଳ-ପାନ ଓ ନିଆଁ ଲିଭା ପାଇଁ ରଖାଯାଇ ଥିବା ବାଲ୍‌ଟିନ୍ ପ୍ରଭୃତି ମଶା ଉତ୍ପତ୍ତିର ଅନୁକୂଳ କ୍ଷେତ୍ର ।

(୨) 'ସାଂପ୍ରଦାୟିକ କ୍ରିୟା' (Communal activities) ଉପରେ କୁହାଯାଇ ଥିବା କାରଣମାନଙ୍କ ଛଡ଼ା ଗୋଟାଏ ଗୋଟାଏ ସମ୍ପ୍ରଦାୟ ସମୂହଭାବେ ବିପାକ୍ତ ମଶା ବୃଦ୍ଧି ପାଇବାର ସୁଯୋଗ

ଦିଅନ୍ତି । ଉପଯୁକ୍ତ ନର୍ଦ୍ଦମାର ଅଭାବରେ, ଖରାପ କିବା ଖରାପ ପ୍ରଣାଳୀରେ ପ୍ରସ୍ତୁତ ହୋଇଥିବା ଏବଂ ଭଲ ରୀତିରେ ନିୟନ୍ତ୍ରିତ ହେଉନଥିବା ନାଳ ନର୍ଦ୍ଦମାଯୋଗୁଁ, ଅସ୍ୱାସ୍ଥ୍ୟକର ସ୍ଥଳରେ ବାସଗୃହ ନିର୍ମାଣର ନିର୍ବାଚନ ହେତୁ, ଇଟା ତିଆରିପାଇଁ ମାଟି ଖୋଳା ଯାଇଥିବା ଖାତ, କୃଷିପାଇଁ ଦୋଷଯୁକ୍ତ ଜଳ ସେଚନ ପ୍ରଣାଳୀ ଓ ଉତ୍ତମରୂପେ ଯୋଜନା ହୋଇ ନଥିବା ଜଳ ଯୋଗାଣ ପ୍ରଣାଳୀ କାରଣରୁ ମଶାମାନେ ବୃଦ୍ଧି ପ୍ରାପ୍ତ ହୁଅନ୍ତି ।

(ଘ) ତିନିଗୋଟି କାରଣଯୋଗୁଁ ମେଲେରିଆ ଆକ୍ରମଣ କରିଥାଏ:—

(କ) ମେଲେରିଆ ଜ୍ୱରରେ ପୀଡ଼ିତ ଥିବା ରୋଗୀକୁ 'ଆନୋଫେଲିସ୍' ଜାତୀୟ ମାଈ ମଶା କାମୁଡ଼ିବା ।

(ଖ) ସେହି ମଶାମାନେ କେବଳ 'ଅନୋଫେଲିସ୍' ଜାତୀୟ ମଶା ହୋଇଥିବେ ଏବଂ ବିଶେଷତଃ ସେହି ଜାତୀୟ ମାଈମଶା ହୋଇଥିବ ।

(ଗ) ମେଲେରିଆ ରୋଗୀକୁ କାମୁଡ଼ିବାର ପ୍ରାୟ ୧୦ କିବା ୧୨ ଦିନ ପରେ ମଶାମାନେ ଜୀବାଣୁ ସୁସ୍ଥ ସବଳ ବ୍ୟକ୍ତିର ଶରୀରକୁ ସଞ୍ଚାରକରି କରନ୍ତି ।

## ୧୪ ମଶାର ଜୀବନ କାହାଣୀ

(୧) ଜଳରେ, ଜଳ ନିକଟରେ କିବା ଜଳ ଜମି ରହିବାର ସମ୍ଭାବନା ଥିବା ସ୍ଥାନରେ ପରିଣତ ବୟସର ମାଈ ମଶାମାନେ ଡିମ୍ବ ଦେବାଠାରୁ ମଶାର ଜୀବନ କାହାଣୀ ଆରମ୍ଭ ହୁଏ । କ୍ୟୁଲେକ୍ସ ମଶା ସାର ସାର ଡିମ୍ବ ଦିଅନ୍ତି—ମାତ୍ର ଆନୋଫେଲିସ୍ ଜାତୀୟ ମଶା ଗୋଟି ଗୋଟିକିଆ ଡିମ୍ବ ଦେଇଥାନ୍ତି ।


























( ଛବି ୮୮ )

(୨) ଏହି ଡିମ୍ବ ଗୁଡ଼ିକ ଛୁଆରେ ପରିଣତ ହୁଅନ୍ତି । ଏଥିପାଇଁ ଯେତେ ସମୟ ଲାଗେ ତାହା ସବୁବେଳେ ସମାନ ନଥାଏ । ଏହି କୀଟମାନେ କ୍ଷୁଦ୍ରାକ୍ଷୁଦ୍ର ଜଳଜାତ ଉଦ୍ଭିଦ, ଲତା ଓ ମୃତ କିମ୍ବା ଜୀବିତ ଜୀବମାନଙ୍କୁ ଆହାର କରି କ୍ରମେ ବଢ଼ନ୍ତି । ଏହିରୂପେ ବଢ଼ି ତିନୋଟି ବିଭିନ୍ନ ରୂପରେ ପରିଣତ ହୁଅନ୍ତି । ଏହି ତୃତୀୟ ରୂପ ପରେ ଯେଉଁ ଚତୁର୍ଥ ରୂପ ଧରନ୍ତି ସେତେବେଳେ ସେମାନେ ଡିମ୍ବରୁ ବାହାରି ଆସନ୍ତି । ମଶାମାନଙ୍କ ଛୁଆ ଅବସ୍ଥାର କାଳ ଶୀତ ପ୍ରଧାନ ଦେଶରେ ଦୁଇଦିନଠାରୁ ଆରମ୍ଭ କରି ଅନେକ ମାସ ଯାଏ ରହେ ।

(୩) ଶ୍ୱାସ ପ୍ରଶ୍ୱାସ ଗ୍ରହଣ ପ୍ରଣାଳୀ ମେଲେରିଆ ପ୍ରତିଷେଧର ଗୋଟାଏ ବିଶେଷ କୌତୂହଳପ୍ରଦ ଅଙ୍ଗ । କୀଟମାନଙ୍କ ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗକୁ ବାୟୁ ଗ୍ରହଣ କରିବାପାଇଁ ଯେଉଁ ବାୟୁ ନାଳୀମାନ ଅଛି ସେଗୁଡ଼ିକ ଦେହର ଯେଉଁ ସ୍ଥାନରେ ଖୋଲି ରହି-ଥାଏ ସେହି ସ୍ଥାନକୁ 'ସ୍ପିରାକାଲସ' କୁହାଯାଏ । ଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିବା ବେଳେ ଏହି କୀଟଗୁଡ଼ିକ ଜଳର ଉପର ସ୍ତର ସହିତ ଠିକ୍‌ଭାବେ ସମାନ୍ତରକୁ ଯାଇ ଉପରଠାରୁ ଅତି କମ୍ ଦୂରରେ ରହି ଥାଆନ୍ତି । 'କାଲିସିନ' (Calicine) ନାମକ କୀଟର 'ସ୍ପିରାକାଲ' ଶ୍ୱାସନାଳୀ ଗୋଟାଏ ଦୀର୍ଘ ନାଳୀର ଅଗ୍ର ଭାଗରେ ଥାଏ ଯାହାକି 'ସାଇଫନ' (Siphon) ନାମରେ ଅଭିହିତ । ନିଃଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିବା ବେଳେ ଏହି କୀଟମାନଙ୍କ ଦେହ ଜଳର ଉପର ସ୍ତରରୁ ସାଇଫନ ସାହାଯ୍ୟରେ ତଳକୁ ଲମ୍ବି ରହିଥାଏ ।

ଚତୁର୍ଥ ଅବସ୍ଥାରେ ପହଞ୍ଚି କୀଟମାନେ ଯେତେବେଳେ ବର୍ଦ୍ଧି ପରିଣତ ଆକାର ଧାରଣ କରନ୍ତି ସେତେବେଳେ ସେମାନଙ୍କ ଆହାର ବ୍ୟବସ୍ଥା ଏବଂ ନିଶ୍ୱାସ ପ୍ରଶ୍ୱାସ ଗ୍ରହଣ କରିବାର ପ୍ରଶ୍ନ ଉଠେ । ଦୁଇଟି ତୂରୀାକାର ଶ୍ୱାସନାଳୀ ସାହାଯ୍ୟରେ ଏହା ସମାହିତ ହୁଏ । କେତେକ

ଘଣ୍ଟା ବା ସପ୍ତାହ ପରେ ଏହି ଅପରିପକ୍ୱ ବୟସର ଶିଖ ଉପରଭାଗରେ ବସିବାକୁ ଆରମ୍ଭ କରନ୍ତି । ସେମାନଙ୍କ ଦେହରେ ଥିବା ଚର୍ମ ପିଠି-ଉପରୁ ଦୁଇଭାଗ ହୋଇଯାଏ ଏବଂ ଭିତରୁ ପରିଣତ ଅବସ୍ଥାପନ୍ନ ମଶାମାନେ ବାହାର ହୁଅନ୍ତି । ଅଳ୍ପ ସମୟମଧ୍ୟରେ ସେମାନଙ୍କ ପକ୍ଷ ଶୁଖି ବିସ୍ତାରିତ ହୁଏ । ଏହି ନୂଆ ଅବସ୍ଥାର ମୁଣି ମଧ୍ୟରେ ପ୍ରାପ୍ତ ବୟସ୍କ ମଶାମାନେ ରହନ୍ତି । ଏହା ତାହାପରେ ଉଡ଼ି ଯାଆନ୍ତି ।

(୪) ସାଧାରଣରେ ବର୍ଷ ମଧ୍ୟରେ ଅନେକ ଥର ମଶା ଉତ୍ପନ୍ନ ହୁଅନ୍ତି । ବିଭିନ୍ନ ପ୍ରକାର ମଶାପାଇଁ ଅଣ୍ଡା ପ୍ରକ୍ରିୟା ବିଭିନ୍ନ ପ୍ରକାରର ଉଷ୍ମ ବା ଶିତ ଉଭୟ ଅବସ୍ଥାରେ ଏହା ସମ୍ଭବ । ପୋଖରୀର ତଳ ଦେଶରେ ବା ବରଫ ମଧ୍ୟରେ ଏହା ସମ୍ଭବପର ହୁଏ । ଅନ୍ୟ କେତେକ ପ୍ରକାର ମଶା ପ୍ରାପ୍ତ ବୟସ୍କ ଗର୍ଭିଣୀ ମଶାମାନଙ୍କ ପରି ସୁରକ୍ଷିତ ସ୍ଥାନରେ ଶୀତ କଟାନ୍ତି ।

---

## ୧୪ ମଶାର ଆତ୍ମକଥା

ଶ୍ରୀଯୁକ୍ତ ଜେ. ଏନ୍ ମଜୁମଦାରଙ୍କ ଲିଖିତ ହାସ୍ୟୋଦ୍ଦୀପକ ରଚନା:-

ମୁଁ ମୋଟାଏ ନିରୀହ ମଶା ମାତ୍ର । ଇତିପୂର୍ବେ ଆମେ ବଣ ଜଙ୍ଗଲରେ, ଆଲୋକ ଶୂନ୍ୟ କ୍ଷୁଦ୍ର ଗଳି, ଜଳାଶୟମାନଙ୍କ ସଂଲଗ୍ନ ଗାତ ଓ ବନ୍ଧାକାର କୋଣ, ରାସ୍ତା ଦୁଇ ପାଖ ନାଳ, ନର୍ଦ୍ଦମା, ରାସ୍ତା ଉପରେ ଥିବା ପୋଲ ଓ ଅପରିଷ୍କାର ଆବର୍ଜ୍ଜନା ମଧ୍ୟରେ ଥିଲୁ । ବର୍ତ୍ତମାନ (ଜନ ସାଧାରଣ), ଆମେ ତୁମ୍ଭମାନଙ୍କୁ ବିଶେଷ ହଇରାଣ କରୁଛୁଁ ବୋଲି ଅଭିଯୋଗ କରୁଛ । ଏହି କ୍ଷୁଦ୍ର ନିରୀହ ଜୀବମାନଙ୍କ ସମ୍ପ୍ରଦାୟର ଦୃଷ୍ଟି ଏପରି ଭାବେ ଆକର୍ଷଣ କରିଛି ଯେ ସରକାରୀ କାଗଜପତ୍ର ଓ ମୁନିସିପାଲ ଆୟ ବ୍ୟୟ ହିସାବ ଇତ୍ୟାଦିରେ ଆମ

ସମ୍ବନ୍ଧେ ଉଲ୍ଲେଖ କରାଯାଇ ଥାଏ । ଆମେ ପୁଣି ଜାଣିପାରୁଛୁ ଯେ ଆମର ଧ୍ୱଂସ ସକାଶେ ତୁମ୍ଭେମାନେ କୁଆଡ଼େ ଅଭିଯାନ ଚଳାଇବା ପାଇଁ ଗୋଟାଏ ସଙ୍ଘ ଗଠନ କରିଛ । କିପରି ଆମେ ଏତେ ପ୍ରାଧାନ୍ୟ ଲାଭ କରିଛୁ ତାହା ତୁମ୍ଭେମାନେ ଜାଣ କି ? ଏ ସମସ୍ତ ଯାହାକୁ କହନ୍ତି ସମୟର ପ୍ରଭାବ ବା ଯୁଗର ପ୍ରକୋପର ଫଳ । ଆମେ ଆଉ ଏଣିକି ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ରହିବା ପାଇଁ ଇଚ୍ଛୁକ ନୋହୁଁ । ସୁତରାଂ ଜଙ୍ଗଲମୟ ପଥ ଓ ଗ୍ରାମ୍ୟ ଜଳାଶୟମାନଙ୍କ ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ନ ରହି ଆମେ ପ୍ରାସାଦୋପମ ଅଟ୍ଟାଳିକା ଓ ବିଶାଳ ନଗରୀମାନଙ୍କରେ ଆମର ବାସ ସ୍ଥଳ ଖୋଜି ନେଉଛୁ । ଏଣୁ ତୁମ୍ଭେମାନେ (ମନୁଷ୍ୟମାନେ) ତ୍ରିତଳ, ଚତୁର୍ଥତଳ କିମ୍ବା ପଞ୍ଚତଳ ବିଶିଷ୍ଟ ଉଚ୍ଚ ପକ୍କାମାନଙ୍କରେ ବୈଦ୍ୟୁତିକ ପଙ୍ଖା ତଳେ ସୁକୋମଳ ଶଯ୍ୟାରେ ଯେତେବେଳେ ବିଶ୍ରାମ ନିଅ ଆମେ ସେଠାରେ ସୁଦ୍ଧା ପହୁଞ୍ଚି ତୁମର କାନ ନିକଟରେ ଗୁଣୁ ଗୁଣୁ ସଙ୍ଗୀତ କରି ଆମର ମୃଦୁ କାମୁଡ଼ାର ପ୍ରଭାବ ଜଣାଇ ତୁମ ବିଶ୍ରାମରେ ବାଧାଦେଉ । ତୁମ ମଶାରି ଆଉ ଏଣିକି ଆମର ପ୍ରବେଶ ପଥ ରୋଧ କରିପାରିବ ନାହିଁ । ବିଶ୍ୱ ଜଗତର ନିର୍ମାଣ କରିଠ ଶିଳ୍ପୀ ଭଗବାନ ବିଶ୍ୱକର୍ମାଙ୍କ ନିର୍ମିତ ସୁଦୃଢ଼ ଲୌହ ଶଳାକା ଦ୍ୱାରା ନିଚ୍ଛିଦ୍ରଭାବେ ଅବରୁଦ୍ଧ ଗୋଟାଏ ପ୍ରକୋଷ୍ଠ ମଧ୍ୟରେ ହିନ୍ଦୁଶାସ୍ତ୍ର ଉଲ୍ଲିଖିତ ରମଣୀ ରତ୍ନ 'ବେହୁଲା'ର ମଧୁ ବାସର ଶଯ୍ୟା ଭିତରକୁ ଗୋଟାଏ ବିଷଧର ସର୍ପ ପ୍ରବେଶ କରି ଯେପରି ତାର ପ୍ରାଣାଧିକ ପତିକୁ ଦଂଶନ କଲା ସେହିପରି ଆମେ ତୁମର ମଶାରି ଭିତରକୁ ପ୍ରବେଶକରି ତୁମ ମନରେ ଆମର ପ୍ରବେଶ ନେଇ ଚିନ୍ତା ଜାତ କରାଇ ଥାଉଁ । ଆମର ନ୍ୟାଯ୍ୟ ସଙ୍ଗତ ଅଧିକାର ହାସଲ କରିବାକୁ ଯଦି ବା ଆମେ ତୁମକୁ ତୁମର ଉଚ୍ଚ ପ୍ରାସାଦ ଉପର ପର୍ଯ୍ୟନ୍ତ ଅନୁଧାବନ କରୁ ସେଥିରେ ତୁମେ ବା କାହିଁକି ଆମକୁ ଅଯଥା ଦୋଷ ଦିଅ ? ଆମର ଏଇ କର୍ମକୁ ସମର୍ଥନ କରିବାପାଇଁ ନଜିର ପୂର୍ବରୁ

ଅଛି । ହେ ନରରାକ୍ଷସମାନେ ! ଥରେ ଭାବ ଦେଖି ତୁମ୍ଭେମାନେ ଏହି ଗଣତନ୍ତ୍ର ଯୁଗରେ କଣ କରୁଛ ? ଉଚ୍ଚ ଆଭିଜାତ୍ୟ ସମ୍ପନ୍ନ ସମ୍ପ୍ରଦାୟର ଲୋକଙ୍କ ହକ ଅଧିକାରକୁ ଅସ୍ୱୀକାର କରି ସେମାନଙ୍କୁ ଆକ୍ରମଣ କରିବା ପାଇଁ ତୁମେ ନର ରାକ୍ଷସଗଣ ପ୍ରସ୍ତୁତ ନୁହଁ କି ? ତୁମେ ନର ରାକ୍ଷସଗଣ ଯେତେବେଳେ ଅଭିଜାତ ସମ୍ପ୍ରଦାୟର-ଲୋକଙ୍କୁ ଆକ୍ରମଣ କରି ସେମାନଙ୍କ ସୀମା ଅତିକ୍ରମ କରିବା ପାଇଁ ପ୍ରସ୍ତୁତ ହୁଅ ସେତେବେଳେ ଆମର, ଗୋବର ଗଦା ଅଳିଆ ଆବର୍ଜନାମୟ ଗାତ, ଅପରିଷ୍କାର ପୋଖରୀ ଓ ଜଙ୍ଗଲମୟ ପଥରେ ସୀମାବଦ୍ଧ କରି ରଖିବା ପାଇଁ କାହିଁକି ବାଧ କର ? (ଛବି ୪୨ ଓ ୪୩ ଦ୍ରଷ୍ଟବ୍ୟ) । ଜଗତର ଅତି ନିମ୍ନ ସ୍ତରରେ ଆମେ ସୃଷ୍ଟିର ଆଦ୍ୟଗଣତନ୍ତ୍ରବାଦୀ ରୂପେ ଯଦି ତୁମ ମନୁଷ୍ୟ ସମ୍ପ୍ରଦାୟର ଯେଉଁମାନେ କି ଅଭିଜାତ ବୋଲି ଦାବୀ କରୁଛନ୍ତି ସେମାନଙ୍କ ସୁଖ ସମ୍ଭୋଗ, ହକ, ଅଧିକାରରେ ବାଧା ଦେଉ ଥାଆନ୍ତୁ ତେବେ ତୁମ୍ଭର ଅଭିଯୋଗରେ ଯଥେଷ୍ଟ କାରଣ ଥାଆନ୍ତା । ତୁମ୍ଭେମାନେ ପୁଣି ଆମକୁ ଆଇନ କାନୁନ ମାନୁନାହୁଁ ବୋଲି କହୁଥାଅ । ଯେହେତୁ ଆମେ ପ୍ରକୃତିର ସ୍ୱାଭାବିକ ନିୟମକୁ ଆଦୌ ନମାନି ବର୍ଷର ସବୁ ସମୟରେ ତୁମ ନିକଟରେ ପ୍ରବେଶ କରିଥାଉ । ଇତିପୂର୍ବେ ଆମେ ତୁମ ସହିତ କେତେକ ନିର୍ଦ୍ଦିଷ୍ଟ ଋତୁରେ ସାକ୍ଷାତ କରୁଥିଲୁ । ଶୀତ ଋତୁରେ ଆମେ କୌଣସି ମତେ ତୁମକୁ ହଇରାଣ କରୁ ନଥିଲୁ । ମାତ୍ର ବର୍ତ୍ତମାନ ଆମର ଆକ୍ରମଣ ଶୀତ କାଳରେ ଚରମ ସୀମାରେ ପହୁଞ୍ଚେ ବୋଲି ତୁମେ କହୁଥାଅ ଏବଂ ଆମେ କାହିଁକି ଆଇନ ଅମାନ୍ୟ କରୁ ବୋଲି ତୁମେ ଆମକୁ ଦୋଷ ଦିଅ । ଏଥିକୁ ଆମର ଉତ୍ତର "ଥରେ ଚିନ୍ତାକରି ଦେଖ ତୁମେ ସହଜରେ ଜାଣିପାରିବ ଯେ ଏ ବାଟ ଆମକୁ ତୁମେ ଦେଖାଇଛ ।" ତୁମେ ଏ ଯୁଗରେ ଆଇନ କାନୁନ ପ୍ରତି କୌଣସି ଖାତିର କର ନାହିଁ । ତୁମେ "ଆଇନ ଅମାନ୍ୟ" କଥା କହ ଏବଂ ସେଥିପାଇଁ ଆକାଶ ପାତାଳ

କମାଇ ଦିଅ । ତେବେ ତୁମର ପଦାଙ୍କ ଅନୁସରଣ କରିବା ବେଳେ ଆମକୁ କାହିଁକି ଗାଳି ଦିଅ ?

କେତେକ ଚିକିତ୍ସା ବ୍ୟବସାୟୀର ଲୋକଙ୍କ ବିରୁଦ୍ଧରେ ମଧ୍ୟ ଆମର ଗୋଟାଏ ଅଭିଯୋଗ ରହିଛି । ନିରୀହ କ୍ଷୁଦ୍ର ମଶକ ଆମେ । ଆମର ଏ ସମ୍ପ୍ରଦାୟ ପ୍ରତି ତୁମର ଏ କୋପ କଟାକ୍ଷ କାହିଁକି ? ଦେଶରେ ମେଲେରିଆ ହେଲା ନିରୀହ ମଶାମାନେ ସେଥିପାଇଁ ଦାୟୀ ହେଲେ । ପୁଣି କଳାଜ୍ୱର, ବାତ କଫଜ୍ୱର, ଓ ଅନ୍ୟାନ୍ୟ ସଂକ୍ରାମକ ଜ୍ୱର ଏପରିକି ସମସ୍ତ ପ୍ରକାର ଜଣା ଓ ଅଜଣା ବ୍ୟାଧିର ଯେଉଁସବୁ କାରଣ ନିଦାନ ଓ ରୋଗ ମୁକ୍ତିର ଉପାୟ ସ୍ଥିର କରିବାପାଇଁ ତୁମେ ଅସମର୍ଥ ହୁଅ, ସେ ସବୁର କାରଣ ସ୍ୱରୂପ ତୁମେ ଏହି କ୍ଷୁଦ୍ର ନିରୀହ ମଶାମାନଙ୍କୁ ଦୋଷ ଦିଅ ଓ ନିଜ ଉପରୁ ସମସ୍ତ ଦାୟିତ୍ୱ ଦୂର କରିଦିଅ । ଏହାର ପ୍ରତିବାଦ କରିବା ପାଇଁ ଆମର ଶକ୍ତି ନଥିବାରୁ ତୁମର ଅପାରଗତା ଲୁଚି ରହିଯାଏ ଏବଂ ତୁମ ବିଦ୍ୟାବୁଦ୍ଧି ପୂର୍ଣ୍ଣତା ପ୍ରାପ୍ତ ନହୋଇଥିବା ହେତୁ ଅମ ଉପରେ ସମସ୍ତ ଦୋଷ ଢାଳିଦିଅ ? ତୁମର ସହଯୋଗୀ ହୋମିଓପାଥିକ ଚିକିତ୍ସକ ଓ କବିରାଜଗଣ ଆମକୁ ଦୋଷ ଦିଅନ୍ତି ନାହିଁ । ଏ ଦେଶରେ ସତୁରି ବର୍ଷରୁ ଉର୍ଦ୍ଧ୍ୱ ହେବ ମେଲେରିଆ ରୋଗ ଆରମ୍ଭ ହେଲାଣି । ତାର ପ୍ରଥମ ଆକ୍ରମଣ ଯେତେ ଭୀଷଣ ହୋଇପାରେ ସେତେ ବେଶୀ ହୋଇଥିଲା ଓ ତଦ୍ଦ୍ୱାରା ବହୁ ଗ୍ରାମ ବଡ଼ ଗାଁମାନ ମଧ୍ୟ ବିଧ୍ୱସ୍ତ ହୋଇଯାଇଥିଲା । ଅଥଚ ଏହି ଦୀର୍ଘ କାଳ ଆମ ବିରୁଦ୍ଧରେ କୌଣସି ଅଭିଯୋଗ ହୋଇ ନଥିଲା । ସେତେବେଳେ ତୁମେ ଆମରି ଯୋଗୁଁ ଏହା ହୋଇଛି ବୋଲି ଅଭିଯୋଗ କରିଥିଲକି ? ଅମକୁ ଏତେ ବେଶୀ ସଂଖ୍ୟାରେ ପୂର୍ବେ ତୁମେ ଦେଖିପାରୁଥିଲକି ? ତେବେ କାହିଁକି ସେତେବେଳେ ମେଲେରିଆର ପ୍ରଚଳନ ଥିଲା ? ପୂର୍ବେ ଆମର ଅସ୍ତିତ୍ୱ ଯଦି ବା ଏତେ

ଅସୁବିଧାଜନକ ବୋଲି ବୋଧ ହେଉଥିଲା ତେବେ କି ହେତୁ ତୁମେ ଆମକୁ ଏତେ ଦିନ ହେଲା ଧ୍ୱଂସ କରିନଥିଲ ? ତୁମ ସମାଜ କଣ ଆମକୁ ତଡ଼ିଦେବା ପାଇଁ ଅକ୍ଷମ ? ତୁମେ ଲଜ୍ଜା ବୋଧ କରୁନାହଁ, ଆମ ନାମରେ ଯେଉଁ ଅଯଥା ଦୋଷାରୋପ ହେଉଛି ତାର ପ୍ରତିବାଦ ଆମେ ସବୁ ସମୟରେ ମାନବଜାତି ଆଗରେ କରି ଆସିଛୁ । ପ୍ରତିବାଦ ଜଣାଇବାର ଅନ୍ୟ କୌଣସି ଉପାୟ ନଦେଖି ଆମେ ମନୁଷ୍ୟ-ମାନଙ୍କର କାନପାଖରେ ବରାବର ଗର୍ଜ୍ଜନ କରି ତାହା ଜଣାଇ ଆସୁଛୁ ।

ତୁମେ ପ୍ରଶ୍ନ କରିପାର ଆମେ କାହିଁକି ଏବେ ସହର ଜୟ କରିବାକୁ ଯାଉଛୁ । ଏଇ କେତେ ଦିନ ହେଲା ଆମ ସମ୍ପ୍ରଦାୟର ସଂଖ୍ୟା ଅତିରିକ୍ତ ବୃଦ୍ଧି ପାଇଛି ଏବଂ ତଦ୍ଦ୍ୱାରା ତୁମ ସମ୍ପ୍ରଦାୟ ପରି ଆମକୁ ମଧ୍ୟ ବେକାର ସମସ୍ୟା ବିବ୍ରତ କରି ପକାଉଛି ଏବଂ ଆମେ ଏହାର ସମାଧାନର ରାସ୍ତା ପାଉନାହୁଁ । ପୁଣି ତୁମେମାନେ (ମନୁଷ୍ୟ-ମାନେ) ଯେତେବେଳେ ପଲ୍ଲୀ ଅଞ୍ଚଳ ତ୍ୟାଗ କରି ସହରମାନଙ୍କରେ ବାସ କରୁଛ ଏ ନିରୀହ ଜୀବମାନେ ଆଉ କେତେଦିନ ଧରି ଜଙ୍ଗଲ-ମୟ ଗ୍ରାମରେ ଏବଂ ଆବର୍ଜ୍ଜନାମୟ ପୋଖରୀ କୂଳରେ ପଡ଼ି ରହି କ୍ଷୁଧା ପିପାସାରେ ସଢ଼ୁଥିବେ । ଏଣୁ ଆମର ଖାଦ୍ୟ ସମସ୍ୟାର ସମାଧାନ ଦୃଷ୍ଟିରୁ ଓ ଗଣତନ୍ତ୍ର ବିଧାନର ପ୍ରଭାବ ଦେଖାଇବା ପାଇଁ ଆମେ ସହରମାନଙ୍କରେ ଆମର ଆଧିପତ୍ୟ ବିସ୍ତାର କରି ସେଠା ଅଧିବାସୀ-ମାନଙ୍କୁ ସ୍ଥୂଳ ଓ ଉଚ୍ଚ ନୀଚ ନିର୍ବିଶେଷରେ ଏପଟୁ ସେପଟେ ଆକ୍ରମଣ କରୁଁ । ସୁତରାଂ ଆମେ କହୁଁ ଯେ ତୁମ୍ଭେମାନେ ଏପରି ଆପତ୍ତି ଅଭିଯୋଗ ନ କରି ବରଂ ଆପଣା କର୍ମକୁ ଆଦରି ରହିବା ଉଚିତ । ଏହାକୁ ଏକପ୍ରକାର "ସମୟର ବିଚିତ୍ର ବିଧାନ" ବା 'ଯୁଗର ପ୍ରକୋପ' ବୋଲି କହି ତୁନି ହୋଇ ରହିବା ଉଚିତ ।

---

# ୧୭ ମେଲେରିଆ ନିୟନ୍ତ୍ରଣ

ପ୍ରତିଷେଧକ ବ୍ୟବସ୍ଥା ଦ୍ୱାରା ମେଲେରିଆ ନିୟନ୍ତ୍ରଣ କରାଯାଇ ପାରିବ । ଯେହେତୁ ପ୍ରତିରୋଧ ଉପଶମ ଅପେକ୍ଷା ଶତଗୁଣେ ଶ୍ରେୟସ୍କର ।

ପ୍ରତିରୋଧ ଶବ୍ଦଟିରୁ ୫ଟି ଅର୍ଥ କରାଯାଇପାରିବ । ସେ ସବୁ ହେଉଚି (୧) ଆଧୁନିକ ପ୍ରତିଷେଧକଙ୍କର ନିୟମ ଓ ସ୍ୱାସ୍ଥ୍ୟ ରକ୍ଷାର ନିୟମ ଅନୁଯାୟୀ ଆପଣାର ଜୀବନ ପ୍ରଣାଳୀ ଏପରି ଭାବେ ନିୟନ୍ତ୍ରଣ କରିବାକୁ ହେବ ଯେ ଏହା ଦ୍ୱାରା ଦେହରେ ରୋଗ ପ୍ରତିରୋଧ କରିବା ପାଇଁ ଶକ୍ତି ବୃଦ୍ଧି ପାଇବ (୨) ଜୀବାଣୁମାନେ ଶରୀର ମଧ୍ୟରେ ଯେପରି ପ୍ରବେଶ ନକରନ୍ତି ତାର ପ୍ରତିରୋଧ କରିବା ଏବଂ ବସନ୍ତ, ମହାମାରୀ, ବାତକଫ ବା ଟାଇଫଏଡ଼ ଜ୍ୱର ପ୍ରମୁଖ ବ୍ୟାଧି ଆକ୍ରମଣରୁ ରକ୍ଷା ପାଇବା ପାଇଁ ବିଶିଷ୍ଟ ପ୍ରତିଷେଧକ ବ୍ୟବସ୍ଥା ନେବା (୩) ଆପଣା ନିବାସ ଘର ବା ହତା ମଧ୍ୟରେ ମଇଳା ଓ କୀଟ ଯେପରି ଉତ୍ପନ୍ନ ଓ ବୃଦ୍ଧି ନ ହୁଏ ତାର ବହୁତ ପ୍ରତିରୋଧ ବ୍ୟବସ୍ଥା କରିବା । (୪) ରୋଗ ଆକ୍ରମଣ କଲମାନେ ଯଥା ଶୀଘ୍ର ଡାକ୍ତରାଧୀନ ହୋଇ ଔଷଧ ଇତ୍ୟାଦି ସେବନ କରିବା ଏବଂ ପରିଶେଷରେ (୫) ଅନ୍ୟମାନଙ୍କ ପାଖକୁ ରୋଗ ଯେପରି ବ୍ୟାପି ସଂକ୍ରାମିତ ନ ହୁଏ ସେଥିପାଇଁ "ପ୍ରତିଷେଧକ ଶୁଶ୍ରୁଷା" ପାଇଁ ଯତ୍ନବାନ ହେବା ଉଚିତ ।

୨ ଯେ କୌଣସି ରୋଗ ପ୍ରତିରୋଧ କରିବା ପାଇଁ ଉଦ୍ୟମ କରିବା ଗୋଟାଏ ମନୁଷ୍ୟତାର କାର୍ଯ୍ୟ । ପୁଣି ଅର୍ଥନୈତିକ କାରଣ ଦୃଷ୍ଟିରୁ ମଧ୍ୟ ମେଲେରିଆ ନିବାରଣ ପାଇଁ ବ୍ୟବସ୍ଥା କରିବା ଯୁକ୍ତି ସଙ୍ଗତ । ଏହା ମନେ ରଖିବା ଉଚିତ ଯେ ମେଲେରିଆ ଭଳି ଗୋଟାଏ ଜୀବାଣୁ ଜନିତ ରୋଗ ଆକ୍ରମଣ କରିଥିବା ଲୋକକୁ ମଶା

କାମୁଡ଼ିଲେ, ତାର ରକ୍ତରେ ଥିବା ମେଲେରିଆ ଜୀବାଣୁ ସଂକ୍ରମଣ କ୍ରିୟାରେ ସାହାଯ୍ୟ କରେ । ସୁତରାଂ ମେଲେରିଆ ରୋଗୀର ଶୁଶ୍ରୁଷା କରୁଥିବା ଲୋକ, ପାଖକୁ ମଶାକାମୁଡ଼ା ଦ୍ୱାରା ମେଲେରିଆ ଯେପରି ନ ବ୍ୟାପେ ସେଥିରୁ ରକ୍ଷା ପାଇବା ଦିଗରେ ସତର୍କ ରହିବା ଉଚିତ ।

(୩) ବାସ୍ତବିକ ମଶାମାନେ ସଂକ୍ରାମକ ରୋଗ ସଞ୍ଚାର କରନ୍ତି (ଛବି ୪୪ ଦ୍ରଷ୍ଟବ୍ୟ) । ସୁତରାଂ ମଶା ନଥିଲେ ଆଉ ମେଲେରିଆ ଆକ୍ରମଣ କରନ୍ତା ନାହିଁ (ଛବି ୪୫ ଦ୍ରଷ୍ଟବ୍ୟ) ଅଥବା ମଶା କାମୁଡ଼ାରୁ ରକ୍ଷା ପାଇବା ପାଇଁ ପ୍ରତିରୋଧ ବ୍ୟବସ୍ଥା କଲେ ମଧ୍ୟ ଆଉ ମେଲେରିଆ ହୁଏ ନାହିଁ, ପୁଣି ମେଲେରିଆ ନିବାରଣର ତୃତୀୟ ଉପାୟ ହେଉଚି ମନୁଷ୍ୟ ଶରୀରରେ ଥିବା ସମସ୍ତ ଜୀବାଣୁ ନାଶ କରିବା । ସମସ୍ତ ପ୍ରକାର ମାଲେରିଆ ପ୍ରତିରୋଧ ବ୍ୟବସ୍ଥାରେ ଏହି ତିନୋଟି ନୀତିକୁ ମୂଳ ଭିତ୍ତି ରୂପେ ଗ୍ରହଣ କରାଯାଏ । ମଶା ଧ୍ୱଂସ ପାଇଁ ଗୋଟାଏ ପ୍ରକୃତ କାର୍ଯ୍ୟ ହେଉଚି ମଶା ଉତ୍ପତ୍ତି ସ୍ଥଳମାନ ଧ୍ୱଂସ କରିବା । କିନ୍ତୁ ଏହି କାର୍ଯ୍ୟ ବିଶେଷତଃ ପଲ୍ଲୀ ଅଞ୍ଚଳରେ ସେତେଦୂର ସହଜ ନୁହେଁ । ମଶାମାନେ ଅତି କ୍ଷୁଦ୍ର ଜଳ ପୂର୍ଣ୍ଣ ସ୍ଥାନମାନଙ୍କରେ ଛୁଆ ଉତାରି ପାରନ୍ତି । ଏପରିକି ଗଛ କୋରଡ଼ ମାନଙ୍କରେ ଜଳ ଜମି ରହିଥିଲେ ସେଠାରେ ମଧ୍ୟ ସେମାନେ ଡିମ୍ବ ଦେଇ ପାରନ୍ତି । ଜଳାଶୟମାନଙ୍କରେ ମଶାମାନେ ଡିମ୍ବ ଦିଅନ୍ତି ଯାହାକି କ୍ରମେ ମଶା ଆକାରରେ ବୃଦ୍ଧି ପାଅନ୍ତି । (ଛବି ୪୬—୪୭) ଯଦିଚ ପ୍ରତ୍ୟେକ ଗୃହସ୍ଥ ସେମାନଙ୍କ ବାସ ଘର ଚତୁଃପାର୍ଶ୍ୱେ ଯେପରି ଅପରିଷ୍କାର ଜଳ ଅସ୍ଥାୟୀ ଭାବେ ନରହେ ସେଥିପାଇଁ ସତର୍କ ରହନ୍ତି, ଏ ଦିଗରେ ବହୁତ ଉପକାର ହୁଅନ୍ତା । ମଶାରୁ ରକ୍ଷା ପାଇବାକୁ ହେଲେ ଜଳାଶୟ ମାନଙ୍କରେ ଜଳ ପୂର୍ଣ୍ଣ କରି ଦେବାକୁ ହେବ (ଛବି ୪୮) । ଛବି ୪୯ରେ ଗୋଟାଏ ଅସ୍ୱାସ୍ଥ୍ୟକର ଘର ଦେଖାଯାଏ ଯହିଁରେ କି ମଶାମାନେ

Fig. 46



FIGURE
10



FIGURE
11

Fig. 47

Fig. 49

FIGURE
8





FIGURE
9

Fig. 48

ଭୂଆ ଉତ୍ପନ୍ନ କରନ୍ତି । ଯେଉଁଠାରେ ଏହା ପରିଷ୍କାର କରିବା ଗୋଟାଏ ଲୋକର କର୍ତ୍ତବ୍ୟ ନୁହେଁ ସେଠାରେ ସ୍ଥାନୀୟ କର୍ତ୍ତୃପକ୍ଷ ସେହିଭଳି ବ୍ୟବସ୍ଥା ନେବାକୁ ହେବ । (ଛବି ୫୦) ଦ୍ରଷ୍ଟବ୍ୟ । ସ୍ଥାୟୀ ଜଳ ଯୋଗାଣ ସ୍ଥଳରେ ମଶା ନପଶିବାର ବନ୍ଦୋବସ୍ତ କରିବାକୁ ହେବ ।



(ଛବି ୫୦)

୪ ଏକ ଭାଗ ପାରିସଗ୍ରୀନ (Paris green) ଓ ଶହେ ଭାଗ ବାଲି ମିଶାଇ ତାହାକୁ ଜଳାଶୟରେ ସେଚନ କଲେ ଅନୋଫିଲିସ ଜାତୀୟ ମଶା ଛୁଆମାନେ ମଧ୍ୟ ନାଶ ହୋଇ ପାରନ୍ତି।



(ଛବି ୫୧)

Fig. 60

FIGURE 12





FIGURE 13

Fig. 59

Fig. 52



FIGURE 14



FIGURE 15

Fig. 53

(ଛବି ୫୧) ମଶା ଛୁଆମାନେ ଏପରି ଷୁଧା କାତର ଯେ ସେମାନେ ଶଙ୍କୁଆ ବିଷ ଯୁକ୍ତ ଏହି ପାରିସ ଗ୍ରୀନ ଚୂର୍ଣ୍ଣ ଖାଇ ମରି ଯାଆନ୍ତି । ଏହି ବ୍ୟବସ୍ଥା ଅବଶ୍ୟ ପାନୀୟ ଜଳ ଯୋଗାଣ ବିଭାଗରେ ପ୍ରୟୋଗ କରାଯାଇ ନପାରେ । ଏପରି ସ୍ଥଳେ ମଶା ଛୁଆମାନଙ୍କୁ ତେଲ, ଫିନାଇଲ ଓ ଅନ୍ୟାନ୍ୟ ରାସାୟନିକ ଔଷଧ ଦ୍ୱାରା ନାଶ କରାଯାଇ ପାରିବ ଏବଂ "ଗାମ୍ବୁସିଆ" (Gambusia) ନାମକ ଏକ ଜାତୀୟ ମାଛ ପାନୀୟ ଜଳ ଥିବା ସ୍ଥଳରେ ରଖିଲେ ମଧ୍ୟ ମଶା ଧ୍ୱଂସ ହୋଇପାରିବେ । (ଛବି ୫୨) ଏହି ମାଛମାନେ ଖୁବ୍ ଶୀଘ୍ର ମଶା ଛୁଆ ଅଣ୍ଡା ଇତ୍ୟାଦି ଗିଳି ଦିଅନ୍ତି । କୂପ ଓ ଜଳାଶୟ-ମାନଙ୍କରେ ଏହି ଧରଣର ମାଛ ସ୍ୱଚ୍ଛନ୍ଦରେ ପୋଷା ଯାଇ ପାରିବ । ସରକାର ସ୍ୱାସ୍ଥ୍ୟ ବିଭାଗଙ୍କ ନିକଟରେ ଏହି ମାଛ ମିଳେ । ବାସ ଘର ଗୁଡ଼ିକଠେ ଅନ୍ତତଃ ଅଧ ମାଇଲ ମଧ୍ୟରେ ଏହି ରୂପେ ମେଲେରିଆ ପ୍ରତିଷେଧକ ବ୍ୟବସ୍ଥା କରାଯାଇ ପାରିବ ।

(୫) ଭୂମିର ଉପରିଭାଗ ଯଦି ପାଣି ବହିବା ଦୃଷ୍ଟିରୁ ଅନୁକୂଳ ଥାଏ ତାହା ହେଲେ ସଡ଼କ ପାଖରେ ନାଳ ଖୋଳି ତାକୁ ସର୍ବଦା ପରିଷ୍କାର ରଖିବ, ଯେପରି ଗୋଳିଆ ପାଣି ବା ବର୍ଷାଜଳ ସେଥିରୁ ସହଜରେ ବହିଯାଏ ।

(୬) ମଶା କାମୁଡ଼ା ନିବାରଣର ପ୍ରଧାନ ଉପାୟ ମଶାରୀ ବ୍ୟବହାର । (ଛବି ୫୩) ପ୍ରତ୍ୟେକ ଲୋକ ମଶାରି ବାନ୍ଧି ଶୋଇବା ଉଚିତ । ଛବି ୫୪ ରେ ଦେଖିପାରିବ କିପରି ଠିକମତ ଭାବେ ମଶାରି ବ୍ୟବହାର କରା ଯାଏ । ଅନେକେ ମଶାରି ବ୍ୟବହାର କରିବା ପାଇଁ ଅକ୍ଷମ ବୋଲି କୁହା ଯାଏ । ଯେଉଁମାନେ ଏପରି କହନ୍ତି ସେମାନେ ମେଲେରିଆ ଦ୍ୱାରା ଉପାର୍ଜନ ଶକ୍ତି କିପରି କମ ହୁଏ ତାହା ବୋଧ ହୁଏ ବିଚାରକୁ ଆଣନ୍ତି ନାହିଁ । କେବଳ ମୁଣ୍ଡ ଓ ଦେହର ଅନ୍ୟାନ୍ୟ

ଅନାବୃତ ଅଙ୍ଗ ପାଇଁ ଗୋଟାଏ ଛୋଟ ମଶାରି ବ୍ୟବହାର କରି ଦେହର ଅନ୍ୟ ସମସ୍ତ ଅଂଶ ବାହାରେ ରଖିଲେ ମଶାରି ପାଇଁ ବହୁତ କିଛି ଖର୍ଚ୍ଚାନ୍ତ ହେବାକୁ ପଡ଼ିବ ନାହିଁ । ମାତ୍ର ଏହା ସୁବିଧା ନୁହେଁ ଏବଂ ଏଥିରେ ସେପରି କୌଣସି ଉପକାର ସାଧିତ ହୁଏ ନାହିଁ ।

(୭) କୌଣସି ଲୋକ ଯଦି ବା ଗୋଟିଏ ମଶାରି କିଣିବା ପାଇଁ ନିତାନ୍ତ ଅସମର୍ଥ ହୁଏ ତାହାହେଲେ ମଶା ନିବାରଣର ଅନ୍ୟ ବ୍ୟବସ୍ଥା କଲେ ବିଶେଷ ଉପକାର ହୋଇ ପାରିବ । କିରୋସିନି ତେଲ ମଶା ଅନ୍ତର କରିବା ପାଇଁ ଗୋଟାଏ ଜଣା ଶୁଣା ଉପାୟ; ମାତ୍ର ଏହା ଖୁବ୍ ଶୀଘ୍ର ଶୁଖି ଯାଏ । କିନ୍ତୁ ଜଡ଼ା କିମ୍ବା ଅନ୍ୟାନ୍ୟ ଜାତି ତେଲରେ କିରୋସିନ୍ ମିଶାଇ ବ୍ୟବହାର କଲେ ତାର ଫଳ ଦୀର୍ଘ କାଳ ରହେ । ମଶା ଅନ୍ତର କରିବା ପାଇଁ ସିଟ୍ରୋସିଲା ତେଲ (Citrosella oil) 'ଲେମନ୍ ତୃଣତେଲ' (Lemon grass oil) ଇଉକାଲି ପତ୍ରର ତେଲ (Eucalyptus oil) ପ୍ରଭୃତି ଅନ୍ୟାନ୍ୟ ବ୍ୟବସ୍ଥା ଅଛି । ଏହି ଔଷଧ ତେଲମାନ ଓ ମଶାରି ବାହାରେ ଥିବା ଦେହର ଅନାବୃତ ଅଂଶକୁ ମୁହଁ ଓ ଅଙ୍ଗମାନଙ୍କରେ ଲଗାଇ ସୂର୍ଯ୍ୟାସ୍ତ ପୂର୍ବେ ଉତ୍ତମ ରୂପେ ଘଷିଲେ ଜଣେ ସହଜରେ ମଶା କାମୁଡ଼ାରୁ ରାତ୍ରିରେ ରକ୍ଷା ପାଇଁ ପାରିବ ।

**(୮) ମେଲେରିଆ ନିବାରଣର ସରକାରୀ ବ୍ୟବସ୍ଥା:—** ଲୋକେ ବ୍ୟକ୍ତିଗତ ଭାବେ ଯେତେଦିନ ପର୍ଯ୍ୟନ୍ତ ଅଶିକ୍ଷିତ ବା ଉଦାସୀନ ରହନ୍ତି ବା ରହିବାକୁ ଇଚ୍ଛା କରନ୍ତି ସେତେଦିନ ପର୍ଯ୍ୟନ୍ତ ସମାଜକୁ ଏପରି ବ୍ୟବସ୍ଥା ଆବିଷ୍କାର କରିବାକୁ ହେବ ଯଦ୍ଦ୍ୱାରା ଲୋକେ ପ୍ରତି-ଷେଧକ ବ୍ୟବସ୍ଥାର ନୀତି ଓ ନିୟମ ଶିକ୍ଷା କରିବା ଛଡ଼ା ସେମାନେ ଅନ୍ୟମାନଙ୍କୁ ଯେପରି ରୋଗ ସଂକ୍ରମଣ ନକରନ୍ତି ସେଥିପାଇଁ ଶିକ୍ଷା

ଦେବାକୁ ହେବ । ଅନ୍ତୁର ମଧ୍ୟ କେବଳ ବ୍ୟକ୍ତିଗତ ଭାବେ, କୀଟ ଉପଦ୍ରବ ବିରୁଦ୍ଧରେ ଯୁଦ୍ଧ କରିବା ସହଜ ସାଧ୍ୟ ନୁହେଁ । ପୁଣି ଅବସ୍ଥା ସ୍ୱଚ୍ଛଳ ନ ଥିବା ଲୋକେ ପ୍ରାଥମିକ ଡାକ୍ତରୀ ପରୀକ୍ଷା, ଚିକିତ୍ସା ତଥା ପ୍ରତିଷେଧ, ଶୁଶ୍ରୂଷା କରାଇବା ପାଇଁ ସେତେଦୂର ଇଚ୍ଛା ଦେଖାନ୍ତି ନାହିଁ । ସୁତରାଂ ଏହି ସବୁ ସର୍ବସାଧାରଣଙ୍କ ଅବସ୍ଥାମାନ ଗୋଟାଏ ସମୂହ ସମ୍ପ୍ରଦାୟର ମିଳିତ ଓ ଶୃଙ୍ଖଳିତ ଚେଷ୍ଟା ଦ୍ୱାରା ସାଧିତ ହେବା ଉଚିତ ।



(ଚିତ୍ର ୨୭)

ଘରର ସମସ୍ତ ପ୍ରକୋଷ୍ଠରେ ଗନ୍ଧକ ଜାଳି ସେ ସବୁକୁ କୀଟ-ଶୂନ୍ୟ କରିବାକୁ ହେବ (ଛବି ୫୬) । ଘରକୁ ମେଲେରିଆରୁ ନିରାପଦ ରଖିବା ପାଇଁ ବର୍ତ୍ତମାନ ସମୟର ଶସ୍ତା ବ୍ୟବସ୍ଥା ହେଉଛି ଘରେ 'ପାଇରିଥ' ରସ (Pyrethra extract) ସେଙ୍କ ଦେବା । ପ୍ରତ୍ୟେକ ଘରେ ପ୍ରତ୍ୟହ ଅନ୍ତ ପ୍ରତ୍ୟେକରୁ ଏହାକୁ ସେଚନ କରିବାକୁ ହେବ । ଏହିରସ ସେଚନ କରିବା ପରେ ପ୍ରାୟ ଅଧଘଣ୍ଟା ଯାଏ ଘରଗୁଡିକ ବନ୍ଦ ରଖିବ । ପ୍ରତ୍ୟେକ ଦିନ ଏପରି କରିବାକୁ ହେବ । ସେପରି ଯଦି ସମ୍ଭବ ନହୁଏ ତାହାହେଲେ ସପ୍ତାହକେ ଅନ୍ତତଃ ତିନିଥର ଏପରି କରିବା ଉଚିତ । (ଛବି ୫୭)

ବିଗତ ମହାଯୁଦ୍ଧରେ ଡି. ଡି. ଟି. (D. D. T.) ନାମକ ଏକ ପ୍ରକାର ଆଶ୍ଚର୍ଯ୍ୟଜନକ ଔଷଧ ଆବିଷ୍କୃତ ହୋଇଛି । ଏହା ସେଚନ କଲେ ଦୀର୍ଘ ସମୟ ପର୍ଯ୍ୟନ୍ତ ମଶା ନିବାରଣ କରାଯାଇ ପାରେ । ସାଧାରଣଲୋକଙ୍କ ବ୍ୟବହାର ପାଇଁ ଏହି ଔଷଧ ବର୍ତ୍ତମାନ ମିଳୁଛି । ବର୍ତ୍ତମାନ ଏହି ଆବଶ୍ୟକୀୟ ପଦାର୍ଥଟି ଯୁକ୍ତିଯୁକ୍ତ ମୂଲ୍ୟରେ ଭାରତ-ବର୍ଷରେ ମିଳିପାରୁଛି ।

ମେଲେରିଆ ଧ୍ୱଂସାତ୍ମକ ବିରୁଦ୍ଧରେ ଡି. ଡି. ଟି. ସାହାଯ୍ୟରେ ଅଭିଯାନ କରିବା ପାଇଁ ଏ ତଳଲିଖିତ କେତେକ ଯନ୍ତ୍ର ବ୍ୟବହୃତ ହୁଏ:— (ଛବି ୫୮)

(୧) $2\frac{1}{4}$ ଗ୍ୟାଲନ ଧରିବା ଭଳି ଗୋଟାଏ ଖାଲି ପିତ୍ତଳ ନାପସାକ୍ (All Brass Kapsack Sprayr) ସେଚନ ଯନ୍ତ୍ର ।

(୨) ଗୋଟାଏ ୩ କ୍ୟାଟର 'ବାଲ୍‌କୋ' ବାୟୁଚାଳିତ ସେଚନ କଳ ଯାହାକୁ ଇଂରେଜରେ 'ଜିମଡାଣ୍ଡି ଟାଇପ' (Jim Dandy type) କୁହାଯାଏ ।

Fig. No. 24



**Dirty Tank.**

Fig. 56

FIGURE 16





Fig. 77

FIGURE 17

Fig. 76



Fig. 58 (Contd.)



Item 3.



Item 5.



Item 6.

(୩) ଗୋଟାଏ ପବନରୁଦ୍ଧ ସେଚନ କଳ (Compressed Air Sprayer) ଯହିଁରେ ପମ୍ପ ଯନ୍ତ୍ର ନଥାଏ ।

(୪) ଡି. ଡି. ଟି ପ୍ରକାଶେ ଏକ ପାଉଣ୍ଡ ଧରିବା ପାଇଁ କେବଳ ପିତ୍ତଳରେ ତିଆରି ହୋଇଥିବା ଗୋଟାଏ ସଫା କରିବା ଯନ୍ତ୍ର ।

(୫) ଡି. ଡି. ଟି. ଚୂର୍ଣ୍ଣ ସେଚନ ପ୍ରକାଶେ ଘୂର୍ଣ୍ଣାୟମାନ ଚୂର୍ଣ୍ଣ ନିକ୍ଷେପ ଯନ୍ତ୍ର (Rotary Powder Blower) ।

(୬) ଦୂରକୁ ନିକ୍ଷେପ ଯେପରି ହୁଏ ସେପରି ଗୋଟାଏ ହାତ ସେଚନ ଯନ୍ତ୍ର (Flit Type Hand Sprayer) ।

ଦିଲ୍ଲୀ ଚାନ୍ଦନିଚୌକ ୧୫୫ ନମ୍ବରରେ ଅବସ୍ଥିତ ମେସେରସ୍ ବାଲି କମ୍ପାନୀ ( Messrs Bali & Co ) ଏହି ଯନ୍ତ୍ରମାନ ସେମାନଙ୍କ ତାଲିକା ଲିଖିତ ମୂଲ୍ୟରେ ଯୋଗାଇ ଥାଆନ୍ତି । ଏ ସମ୍ବନ୍ଧରେ ଅନ୍ୟାନ୍ୟ ବିଶେଷ କିଛି ଜାଣିବା ଆବଶ୍ୟକ ହେଲେ ସ୍ଥାନୀୟ ସ୍ୱାସ୍ଥ୍ୟ ବିଭାଗୀୟ କର୍ତ୍ତୃପକ୍ଷଙ୍କଠାରୁ ଜାଣି ପାରିବେ ।

ମଶାଜନ୍ମ ନିରୋଧ କରିବାକୁ ହେବ । କ୍ଷୁଦ୍ର ଜଳାଶୟ ଓ ପୋଖରୀ ଇତ୍ୟାଦିକୁ ଜଳରେ ପୂର୍ଣ୍ଣ କରିବାକୁ ହେବ । ପ୍ରତ୍ୟହ ଜଳ ପାତ୍ରମାନ ଶୁଷ୍କ ରଖିବାକୁ ହେବ । ( ଛବି ୫୧ ) ପୋଖରୀ ପରିବର୍ତ୍ତେ କେବଳ ଛୋଟ ଛୋଟ ଗାଡ଼ି ଥିଲେ ସେଗୁଡ଼ିକରେ ତେଲ ଛିଞ୍ଚି ଦେବାକୁ ହେବ ।

ଚିକିତ୍ସା କାର୍ଯ୍ୟରେ ବିଳମ୍ବ କରିବା ଦ୍ୱାରା କେଉଁ ସୂତ୍ରରୁ ରୋଗୀସଂଖ୍ୟା ବୃଦ୍ଧି ହେଉଛି ତାହା ଜାଣି ହୁଏ ନାହିଁ । ଫଳରେ ୧୦ କିମ୍ବା ୨୦ ବର୍ଷରେ ଅନ୍ତତଃ ଅନେକ ଚିକିତ୍ସାଳୟ, ହାସପାତାଲ ଓ ସ୍ୱାସ୍ଥ୍ୟନିବାସ ପ୍ରତିଷ୍ଠା କରିବାକୁ ହେବ ଏବଂ ଅଧିକ ସଂଖ୍ୟାରେ ଅନ୍ଧ, ମୂକ ଓ ବଧିରଙ୍କ ସୁରକ୍ଷା ପାଇଁ ଅନୁଷ୍ଠାନମାନ ଖୋଲିବାକୁ

Fig. 58 (Contd.)



Item 3.



Item 5.



Item 6.

(୩) ଗୋଟାଏ ପବନରୁଦ୍ଧ ସେଚନ କଳ (Compressed Air Sprayer) ଯହିଁରେ ଗୃପ ଯନ୍ତ୍ର ନଥାଏ ।

(୪) ଡି. ଡି. ଟି ପ୍ରକାଶେ ଏକ ପାଉଣ୍ଡ ଧରିବା ପାଇଁ କେବଳ ପିତ୍ତଳରେ ତିଆରି ହୋଇଥିବା ଗୋଟାଏ ସଫା କରିବା ଯନ୍ତ୍ର ।

(୫) ଡି. ଡି. ଟି. ଚୂର୍ଣ୍ଣ ସେଚନ ପ୍ରକାଶେ ଘୂର୍ଣ୍ଣାୟମାନ ଚୂର୍ଣ୍ଣ ନିକ୍ଷେପ ଯନ୍ତ୍ର (Rotary Powder Blower) ।

(୬) ଦୂରକୁ ନିକ୍ଷେପ ଯେପରି ହୁଏ ସେପରି ଗୋଟାଏ ହାତ ସେଚନ ଯନ୍ତ୍ର (Flit Type Hand Sprayer) ।

ଦିଲ୍ଲୀ ଗୃନ୍ଦନଚୌକ ୧୫୫ ନମ୍ବରରେ ଅବସ୍ଥିତ ମେସେରସ୍ ବାଲି କମ୍ପାନୀ ( Messrs Bali & Co ) ଏହି ଯନ୍ତ୍ରମାନ ସେମାନଙ୍କ ତାଲିକା ଲିଖିତ ମୂଲ୍ୟରେ ଯୋଗାଇ ଥାଆନ୍ତି । ଏ ସମ୍ବନ୍ଧରେ ଅନ୍ୟାନ୍ୟ ବିଶେଷ କିଛି ଜାଣିବା ଆବଶ୍ୟକ ହେଲେ ସ୍ଥାନୀୟ ସ୍ୱାସ୍ଥ୍ୟ ବିଭାଗୀୟ କର୍ତ୍ତୃପକ୍ଷଙ୍କଠାରୁ ଜାଣି ପାରିବେ ।

ମଶାଜନ୍ମ ନିରୋଧ କରିବାକୁ ହେବ । କ୍ଷୁଦ୍ର ଜଳାଶୟ ଓ ପୋଖରୀ ଇତ୍ୟାଦିକୁ ଜଳରେ ପୂର୍ତ୍ତି କରିବାକୁ ହେବ । ପ୍ରତ୍ୟହଁ ଜଳ ପାତ୍ରମାନ ଶୁଷ୍କ ରଖିବାକୁ ହେବ । ( ଛବି ୪୧ ) ପୋଖରୀ ପରିବର୍ତ୍ତେ କେବଳ ଛୋଟ ଛୋଟ ଖାଲ ଥିଲେ ସେଗୁଡ଼ିକରେ ତେଲ ଛିଞ୍ଚି ଦେବାକୁ ହେବ ।

ଚିକିତ୍ସା କାର୍ଯ୍ୟରେ ବିଳମ୍ବ କରିବା ଦ୍ୱାରା କେଉଁ ସୂତ୍ରରୁ ରୋଗୀସଂଖ୍ୟା ବୃଦ୍ଧି ହେଉଛି ତାହା ଜାଣି ହୁଏ ନାହିଁ । ଫଳରେ ୧୦ କିମ୍ବା ୨୦ ବର୍ଷପରେ ଆମକୁ ଅନେକ ଚିକିତ୍ସାଳୟ, ହାସପାତାଲ ଓ ସ୍ୱାସ୍ଥ୍ୟନିବାସ ପ୍ରତିଷ୍ଠା କରିବାକୁ ହେବ ଏବଂ ଅଧିକ ସଂଖ୍ୟାରେ ଅନ୍ଧ, ମୂକ ଓ ବଧିରଙ୍କ ସୁରକ୍ଷା ପାଇଁ ଅନୁଷ୍ଠାନମାନ ଖୋଲିବାକୁ

ହେବ । ରୋଗୀଙ୍କ ସଂଖ୍ୟା ଏପରି ବଢ଼ିଯିବ ଯେ ଏତେ ସ୍ୱାସ୍ଥ୍ୟ ଅନୁଷ୍ଠାନ ଖୋଲାଗଲେ ସୁଦ୍ଧା ମାତ୍ର କେତେକ ସଂଖ୍ୟକ ରୋଗୀ ଚିକିତ୍ସିତ ହୋଇ ରୋଗରୁ ମୁକ୍ତ ପାଇ ପାରିବେ ।

ଅସ୍ୱାସ୍ଥ୍ୟଧୀନ ରୋଗ ଓ ମରଣ ହେତୁ ଯେଉଁ ଅର୍ଥନୈତିକ କ୍ଷତି ଘଟେ ତାହା ସହଜରେ ଅନୁମେୟ ଏବଂ ଯେଉଁମାନେ ଶାରୀରିକ ତଥା ମାନସିକ କାର୍ଯ୍ୟ କରନ୍ତି ସେମାନେ ରୋଗ ଯୋଗୁଁ କାମ କରି ନ ପାରିବାରୁ ରାଷ୍ଟ୍ରର ଯେଉଁ କ୍ଷତିହୁଏ ତାହା ମଧ୍ୟ ଭାବିବାର କଥା । ଏହି ପୀଡ଼ିତ ଓ ଅକର୍ମଣ୍ୟ ଲୋକଙ୍କ ଚିକିତ୍ସା ପାଇଁ ବର୍ଷ ବର୍ଷ ଧରି ଜନ-ସାଧାରଣଙ୍କୁ କରଭାର ବହନ କରିବାକୁ ପଡ଼େ ।

ଗରିବ ଲୋକେ ରୋଗରେ ପଡ଼ନ୍ତି ନାହିଁ । କେବଳ ଖାଇବାକୁ ନପାଇ ସ୍ୱାସ୍ଥ୍ୟ ନିୟମମାନ ନଜାଣିବା ହେତୁ ଏବଂ ସମୂହଭାବରେ ଉପଯୁକ୍ତ ଚେଷ୍ଟାର ଅଭାବରୁ ଲୋକେ ବିଶେଷ କ୍ଷତି ଭୋଗ କରନ୍ତି । ଉପରେ କୁହାଯାଇଥିବା ରୀତିମତ ପ୍ରତିକାର ମୂଳକ ବ୍ୟବସ୍ଥାମାନ ପ୍ରୟୋଗ କରାହେଲେ ଏପରି ଅନେକ ରୋଗ ସହଜରେ ନିରୋଧ କରାଯାଇ ପାରିବ ।

ମେଲେରିଆ ନିରୋଧ ଓ ସେଥିରୁ ମୁକ୍ତ ପାଇବା ପାଇଁ ୫ ଟି ବିଷୟ ମନେ ରଖିବା ଉଚିତ । ସେସବୁ ହେଉଛି:—

(୧) ମଶା ଉତ୍ପାତ ଯେ କୌଣସି ମତେ ନିବାରଣ କରିବା ।

(୨) ଅପରିଷ୍କାର ପୋଖରୀ, ଗାଡ଼ିଆମାନ ରଖିବା ଉଚିତ ନୁହେଁ ।

(୩) ବର୍ଷା ଋତୁରେ କୁଇନାଇନ ସେବନ କରିବାକୁ ହେବ ।

(୪) ମଶାରି ମଧ୍ୟରେ ଶୋଇବାକୁ ହେବ ଅଥବା ଦେହରେ ଔଷଧ ତେଲ ଘଷିବାକୁ ହେବ ।

(୫) ପ୍ରତ୍ୟେକ ଜଳ ପାତ୍ରମାନଙ୍କରୁ ଜଳ ବାହାରକରି ରଖିବାକୁ ହେବ । (ଛବି ୭୦)

'ଭିଟାମିନ୍ ବି' (Vitamin B) ଖାଦ୍ୟସାର ଦ୍ୱାରା ମଶାମାନେ ଦୂରକୁ ଚାଲି ଯାଆନ୍ତି । ଜଣେ ଯଦି ଭିଟାମିନ୍ ବି(୧)(Vitamin B1) ଥିବା ବ୍ୟବହାର କରେ ତାକୁ ମଶାମାନେ ଆକ୍ରମଣ କରିପାରନ୍ତି ନାହିଁ । ଯଦି କେହି ଭିଟାମିନ୍ ବି (୧) ଥିବା 'ଥିଆମିନ୍ କ୍ଲୋରାଇଡ୍' ନାମକ (Thiamin Chloride) ଔଷଧି ତେଲ ତାର ଦେହର ଅନାବୃତ ସ୍ଥାନରେ ଲଗାଏ ଏବଂ ଇଚ୍ଛାପୂର୍ବକ ତାର ଦେହ ମଶା କାମୁଡ଼ା ପାଇଁ ଖୋଲା ରଖେ ତେବେ ସେହି ଔଷଧି ତେଲର ଗନ୍ଧ ଏତେ ତୀବ୍ର ଯେ ତଦ୍ଦ୍ୱାରା ମଶାମାନେ ସେହି ଲୋକକୁ ତ୍ୟାଗ କରିବା ପାଇଁ ବାଧ୍ୟ ହୁଅନ୍ତି । ସୁତରାଂ ଏହି ଅତି ସାଧାରଣ ଭିଟାମିନ୍ ବି ୧ ମଶା ଉପଦ୍ରବ ନିବାରଣ ପାଇଁ ବିଶେଷ ଫଳ ଦାୟକ ।

୯ ନିମ୍ନରେ ବର୍ଣ୍ଣନା କରାଯାଇଥିବା ଚିତ୍ର ଅନୁଯାୟୀ ମଶା ନିରୋଧକ୍ଷମ ଘରେ ବାସ କରିବା ଦ୍ୱାରା ମେଲେରିଆ ଅଯୁକ୍ତ କରାଯାଇ ପାରିବ ।

ଏହା ମନେ ରଖିବାକୁ ହେବ ଯେ ଯେତିକି ସୀମାରେ ଘର ନିର୍ମାଣ କରିବା ପାଇଁ କଳ୍ପନା କରାଯାଇଥାଏ କେବଳ ସେହି ଅଂଶକୁ ମଶ ଉପଦ୍ରବରୁ ଅଯୁକ୍ତ କରିବା କାର୍ଯ୍ୟ ଯଥେଷ୍ଟ ନୁହେ । ଯେଉଁ ସ୍ଥାନରେ ଘର ନିର୍ମାଣ କରାଯିବ ତାର ଚତୁଃପାର୍ଶ୍ୱରେ ପ୍ରାୟ ଅଧମାଇଲ ପରିମିତ ଅର୍ଦ୍ଧବ୍ୟାସ ମଧ୍ୟରେ ଥିବା ଭୂମିର ସ୍ୱାସ୍ଥ୍ୟରକ୍ଷା ଦୃଷ୍ଟିରୁ କିପରି ଅବସ୍ଥିତ ସେଥିପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ । ଗୃହାଦି ନିର୍ମାଣ କରିବା ପୂର୍ବରୁ କିମ୍ବା ଅନ୍ତତଃ ତିଆରି ହେବା ବେଳେ ମେଲେରିଆ ନିରୋଧ ଦୃଷ୍ଟିରୁ ସେହି ସ୍ଥାନଟି ଉପଯୁକ୍ତ କି ନାହିଁ, ସେ ଦୃଷ୍ଟିରୁ ସକଳ ବ୍ୟବସ୍ଥା କରିବାକୁ ହେବ । ଏପରି ବ୍ୟବସ୍ଥା ଯେ କେବଳ ନିର୍ମାଣ ଘର ପ୍ରଯୁଜ୍ୟ ତାହା ନୁହେଁ ଚତୁର୍ଦ୍ଦିଗର ନିର୍ଦ୍ଦିଷ୍ଟ ସୀମା ପ୍ରତି ମଧ୍ୟ ଏହା

ପ୍ରଯୁକ୍ତ୍ୟ । ନିର୍ମାଣ କାର୍ଯ୍ୟ ଆରମ୍ଭହେବା ପୂର୍ବରୁ ଘରର ପାଣି ଓ ଜଳସେଚନ ପାଇଁ ପାଣି, ବର୍ଷାଜଳ ଓ ସମସ୍ତ ପ୍ରକାର ଅପରିଷ୍କାର ଜଳ ଯେପରି ବହିଯାଏ ସେଥି ପାଇଁ ଗୋଟାଏ ନକ୍ସା ପ୍ରସ୍ତୁତ କରିବାକୁ ହେବ । ଅପରିଷ୍କାର ପାଣି ଯେପରି ସହଜରେ ବହିଯାଏ ସେଥି ପାଇଁ ଘର ନିର୍ମାଣ ଜାଗାଟିର ତଳ ଯେପରି ଉଚ୍ଚ କରି ହୁଏ ସେଥି ପ୍ରତି ଦୃଷ୍ଟିଦେବା ଆବଶ୍ୟକ ।

ଘରଟିରେ ମଶା ପ୍ରବେଶ ନିରୋଧ କରିବାକୁ ହେବ (ଛବି୨୧) ମେଲେରିଆ ଆୟତ୍ତ କରିବାର ପ୍ରଧାନ ଉପାୟ—ଘରଟିର ପ୍ରବେଶ ପଥରେ ପରଦା ଟାଣିବାକୁ ହେବ । ବର୍ଷା ସମୟରେ ଜଳ ଯେପରି ପୂର୍ଣ୍ଣ ନହୁଏ ସେଥି ପାଇଁ ଘର ପାଖରେ ଥିବା ସମସ୍ତ ଅନାବଶ୍ୟକ ଓ ତ୍ୟାଜ୍ୟ ପାତ୍ରମାନ ଭାଙ୍ଗିଦେବାକୁ ହେବ ନତୁବା ସେଗୁଡ଼ିକୁ ଓଲଟାଇ ମୁହଁତଳକୁ କରି ରଖିବାକୁ ହେବ ।

**କୂପ:**—ଯେଉଁଠାରେ ପିଇବା ଜଳ ପାଇଁ କୂପ ଜଳ ଉପରେ ନିର୍ଭର କରିବାକୁ ପଡ଼େ ସେଠାରେ ମଶା ନିବାରଣ ବ୍ୟବସ୍ଥା କରିବାକୁ ହେବ । କୂପଗୁଡ଼ିକର ମୁଖଶାଳ । ସମ୍ପୂର୍ଣ୍ଣ ରୂପେ ସିମେଣ୍ଟ ଓ ଚୋଡ଼ଦ୍ୱାରା ବନ୍ଦରଖି ଜଳ ଉପରକୁ ଉଠିବା ପାଇଁ ଗୋଟିଏ ପମ୍ପ୍ ରଖାହେଲେ ମଶା ନିରୋଧ ବ୍ୟବସ୍ଥା ଉତ୍ତମ ରୂପେ ହୋଇ ପାରିବ । ଗଳି ବସ୍ତ୍ରା ରଖାଯିବ ନାହିଁ । ମାନ ଧର୍ମ ଅଚରଣ ଦୃଷ୍ଟିରୁ ଏହି କୂପଗୁଡ଼ିକରେ ଆଲୋକ ଓ ପବନ ପ୍ରବେଶର ଯଦି ତା ଆବଶ୍ୟକ ହୁଏ ତାହା ହେଲେ କୂଅମାନଙ୍କରେ ଝରକା ରଖିବ ଏବଂ ସିମେଣ୍ଟ ଓ ଚୋଡ଼ରେ ପ୍ରସ୍ତୁତ ଯୋଡ଼ଣି ଏହି ଝରକାଗୁଡ଼ିକୁ ସଂଲଗ୍ନ କରିବା ଉଚିତ । ବିଶେଷ ମୋଟା କାଚଦ୍ୱାରା କୂଅ ଭିତରକୁ ଆଲୋକ ପ୍ରବେଶ କରିବାର ବ୍ୟବସ୍ଥା କରାଯାଇ ପାରିବ ଏବଂ ଖୁବ୍ ଟାଣୁଆ ତାରରେ ପ୍ରସ୍ତୁତ ମଶା ନିରୋଧ ଜାଲ୍ ଗଳି

ବାହାରେ ରଖାଗଲେ ଉଦ୍ଧ୍ବାସ ପରନ ମଧ୍ୟ ଯାତାୟାତ କରି ପାରିବ । କେବଳ ଯେତିକି ଅଂଶ ଖୋଲା ରହିବା ଉଚିତ ସେତିକି କେବଳ କୂଅ ଢୋଙ୍ଗଣିରେ ଖୋଲା ରଖିବ । କୂଅ ମୁହଁର ଢୋଙ୍ଗଣୀ ଯେପରି ଆବଶ୍ୟକ ସମୟରେ ବନ୍ଦ ରହେ, ତାର ସୁବ୍ୟବସ୍ଥା ପାଇଁ ଲୁହାରେ ତିଆରି ପାଟକ ପ୍ରଣାଳୀର ବ୍ୟବସ୍ଥା କରିବ ଏବଂ ଏହି ଫାଟକ ବନ୍ଦ କରିବା ପାଇଁ ଗୋଟାଏ ତାଲା ରଖିବା ଅବଶ୍ୟକ । (ଛବି ୬୨) ।

ଧର୍ମପ୍ରାଣ ଲୋକେ ଅବଶ୍ୟକ ହେଲେ ଚମଡ଼ା ପରିବର୍ତ୍ତେ ରବର ଯୁକ୍ତ ପମ୍ପ କୂଅରେ ସଂଯୋଗ କରି ପାରନ୍ତି । ଯେଉଁଠାରେ ଏହି ଉନ୍ନତ ଧରଣର ଯୋଜନାର ପାଣି ଯୋଗାଣ ପାଇଁ ପାଇପ୍ ବା ନଳ ବ୍ୟବହାର ଅବଶ୍ୟକ ପଡ଼େ ତାହାହେଲେ ବର୍ତ୍ତମାନ ଥିବା କୂପମାନଙ୍କୁ ଜଳ ପୂର୍ଣ୍ଣ କରି ଉପରେ ବର୍ଣ୍ଣନା କରାଯାଇଥିବା ପ୍ରଣାଳୀରେ ସେ ଗୁଡ଼ିକୁ ମଶା ପ୍ରବେଶରୁ ରକ୍ଷା କରିବା ଉଚିତ । ଛବି ୬୩ ରେ ଗୋଟିଏ ଉନ୍ନତ ଧରଣର କୂପ ଦର୍ଶା ଯାଇଛି । କୂଅର ବାହାରେ ସର୍ବଦା ସ୍ନାନ କରିବାକୁ ହେବ ।

ଜଳ ଉପରେ ଏକ ବର୍ଗଫୁଟକୁ ୨୪ ଅଉନ୍‌ସ ହିସାବରେ ପେଟ୍ରୋଲ୍ ସେଚନ କରିବାକୁ ହେବ ବୋଲି ରାଇଲସ୍ (Ryles) ଓ ମଜୁମଦାର (Mazumdar) ପ୍ରମୁଖ ମତ ବ୍ୟକ୍ତ କରନ୍ତି । ପମ୍ପ ସାହାଯ୍ୟରେ ଜଳ ଟାଣିବାକୁ ହେଲେ ଲିକ୍ୱିଡ଼ ପାରାଫିନ (liquid paraffin) ମଧ୍ୟ ବ୍ୟବହାର କରାଯାଇ ପାରେ ।

ମଶା ଛୁଆ ଭକ୍ଷଣକାରୀ ମାଛ ଆଣି କୂପମାନଙ୍କରେ ଯୋଗି ରଖିବାକୁ ହେବ । କୂପ ପୃଷ୍ଠରେ ଥିବା ଅପରିଷ୍କାର ଜଳ ବିଶେଷ ବିପଦଜନକ କିମ୍ବା କୂପ ଜଳ ଯଦିବା କାଣ୍ଡୁ ନାଳି ଦେଇ ବାହିଯାଏ ଅଥବା କୂପ ନିକଟରେ ଧୋଇବା ଫଳରେ ଯେଉଁ ଜଳ ଜମା ହୋଇ କୂଅ ଭିତରକୁ ପଶିଯାଏ ତଦ୍ୱାରା କ୍ଷତି ହେବାର ସମ୍ଭାବନା ଅଛି (ଛବି ୬୪) ।

ଘରୁ ଓ କୂପମାନଙ୍କରୁ ବାହାର ହେଉଥିବା ସମସ୍ତ ପ୍ରକାର ଅପରିଷ୍କାର ଜଳକୁ ଜମେଇବାକୁ ନିର୍ଦ୍ଦିଷ୍ଟ ଖାତ ସବୁ ଖୋଳିବା ଉଚିତ । ଏହାଦ୍ୱାରା ଗ୍ରାମ୍ୟ ପଥସକଳ ପରିଷ୍କାର ଓ ଶୁଷ୍କ ରହି ପାରିବ । ଏହି ପରିଷ୍କାର ଜଳ ଜମାଠ ଖାତମାନ ୪ ଫୁଟରେ ୪ ଫୁଟ ବର୍ଗାକାର ହେବା ଉଚିତ ଅଥବା ଗୋଲାକାର ହେଲେ ୪ ଫୁଟ ବ୍ୟାସ ହେବା ଉଚିତ । ଖାତ ଗୁଡ଼ିକ ୬ ଫୁଟ ଗଭୀର କରିବାର କଥା ଜଳ ସ୍ତରରେ ବାଲି ଦେଖା ଗଲେ ତାକୁ ଆହୁରି ଗଭୀର କରିବାକୁ ହେବ । ଏହି ଖାତମାନ ଅତିରିକ୍ତ ଭାବେ ପୋଡ଼ା ଯାଇଥିବା ଇଟାଖଣ୍ଡ ଦ୍ୱାରା ଭରିତ କରାଯିବା ଉଚିତ ଯେପରିକି ଉପରଠାରୁ ନିମ୍ନ ତଳ ପର୍ଯ୍ୟନ୍ତ ଇଟା ଖଣ୍ଡ ଗୁଡ଼ିକର ଆକାର କ୍ରମଶ ହୋଇଥିବ । ଉପରେ ଥିବା ଇଟାର ବହଳ ଗୋଟା ଇଟାର 1/4 କମ ହେବା ଉଚିତ । ଗୋଟାଏ ଟିଣ ନଳା ଦ୍ୱାରା ଘରୁ ବାହାରୁ ଥିବା ଜଳ ଡ୍ରାଇନ୍‌ରେ ପ୍ରସ୍ତୁତ ନର୍ଦ୍ଦମା ମଧ୍ୟରେ ବହି ଏହି ଖାତରେ ଯାଇ ଭରିତ ହେବ । ବର୍ଷା ଜଳ ଏହି ଖାତ ଭିତରକୁ ଯେପରି ପ୍ରବେଶ ନକରେ, ସେଥିପାଇଁ ଖାତ ଚାରିପଟକୁ ଗୋଟାଏ ମାଟି ହିଡ଼ ପକାଇ ଉଚ୍ଚ ରଖିବାକୁ ହେବ । ଅପରିଷ୍କାର ଜମା ହେବା ଖାତଗୁଡ଼ିକ ଅନ୍ତତଃ ବର୍ଷରେ ଥରେ ବର୍ଷାପରେ ନୂଆକରି କରିବାକୁ ହେବ । ଖାତରୁ ଇଟାମାନ ବାହାର କରି ଖାତଟି ସୂର୍ଯ୍ୟ ତାପରେ ଶୁଖିବା ପରେ ପୁଣି ସେହି ଇଟା ପକାଇ ଖାତଟି ପୂର୍ବ ପ୍ରଣାଳୀରେ ପୁଣି ପ୍ରସ୍ତୁତ କରିବାକୁ ହେବ ।

ପିଇବା ପାଣି ଭୂମି ଉପରେ ଥିବା ଦୂଷିତ ପଦାର୍ଥ ସଂସର୍ଗରେ ଆସି ହଇଜା ଓ ରକ୍ତ ଆମାଶୟ ବାତ କଫ ଜ୍ୱର ବା ଟାଇଫଏଡ୍ ପ୍ରଭୃତି ଅନ୍ୟାନ୍ୟ ଜଳ ଦ୍ୱାରା ଆନୀତ ରୋଗ ଜାତର ଆଶଙ୍କାରୁ ନିରାପଦ ରଖିବାକୁ ହେଲେ କୂପ ଗୁଡ଼ିକର ଚାରିପଟରେ 2½ ଫୁଟ ଉଚ୍ଚର କାନ୍ଥ ରହିବା ଉଚିତ ଏବଂ ଏହି କାନ୍ଥର ଉପରିଭାଗ ବାହାର ଆଡ଼କୁ କ୍ରମ ନିମ୍ନ ଭାବେ ପ୍ରସ୍ତୁତ ହୋଇଥିବା ଉଚିତ । ଏହି କାନ୍ଥ

ଉପରକୁ ପୁଣି ପାଣିକାଢ଼ିବାପାଇ ଗୋଟାଏ ଚକ ରଖାଯିବ । (ଛବି (୫ ଦ୍ରଷ୍ଟବ୍ୟ) କୂଅ ଗୁହପଟରେ ଯେଉଁ ଚଉତରା (platform) ଥାଏ ତାକୁ ଲଗି ଗୁହପଟରେ ଗୋଟାଏ ନାଳ ରହିବା ଉଚିତ, ଯେପରି ସମସ୍ତ ଅପରିଷ୍କାର ଜଳ ଏଥିରେ ବହି ନର୍ଦ୍ଦମା ଖାତକୁ ଚାଲି ଯାଇ ପାରିବ । ( ଛବି ୬୬ ) ନର୍ଦ୍ଦମା ବା ଅପରିଷ୍କାର ଜଳ ରହିବା ଖାତ ଯେପରି ଜଳର ନିମ୍ନ ଭୂମି ଠାରୁ ଅଧିକ ନିମ୍ନ ଜାଗାରେ ରହେ ତାର ବ୍ୟବସ୍ଥା କରାଯିବା ଉଚିତ । ଯଦିବା ଜଳର ଗଭୀରତା ବା ଅନ୍ୟ କୌଣସି କାରଣରୁ ଜଳର ନିମ୍ନ ଭୂମିସ୍ତର ଠିକ୍ ରୂପେ ଧରା ନଯାଏ ତାହାହେଲେ ଅନ୍ତତଃ କୂଅ ଠାରୁ ୨୫ ଫୁଟ ବ୍ୟବଧାନରେ ଏହି ଖାତ ରହିବା ଉଚିତ । ଆବଶ୍ୟକତା ଦୃଷ୍ଟିରୁ ଏହି ଅପରିଷ୍କାର ଜଳ ପୂର୍ଣ୍ଣ ଖାତଗୁଡ଼ିକର ସଂଖ୍ୟା ଓ ଆକାର ବିଭିନ୍ନ ଧରଣର ହେବା ଆବଶ୍ୟକ । ଉଦାହରଣ ସ୍ୱରୂପ ସର୍ବସାଧାରଣଙ୍କ ବ୍ୟବହୃତ ଗୋଟାଏ ବଡ଼ କୂଅ ନିକଟରେ ୫ ବର୍ଗ ଫୁଟ ପରିମିତ ଦୁଇଟି ଯେପରି ଖାତ ଗୋଟାକ ପରେ ଗୋଟାଏ ପ୍ରସ୍ତୁତ ହେବା ଆବଶ୍ୟକ । ଏହି ବଡ଼ ଧରଣର କୂଅରୁ ସମସ୍ତ ଅପରିଷ୍କାର ଜଳ ଯେପରି ଏଥିରେ ଧରି ପାରିବ ।

୧୦ ଗ୍ରାମ୍ୟ ଅଞ୍ଚଳରେ ମେଲେରିଆ ମାଛଦ୍ୱାରା ଉତ୍ତମ ରୂପେ ଆୟତ୍ତ ହୋଇ ପାରିବ । ଡାକ୍ତର ହାୱାର୍ଡଙ୍କ (Dr. Howard) ଲେଖାରୁ ଜଣାଯାଏ ଯେ ଏହି ନିୟମ ମେଲେରିଆ ନିବାରଣ ପାଇଁ ପ୍ରୟୋଗ କରାହେଲେ ସେଥି ପାଇଁ କୌଣସି ବିଶେଷ ଶିକ୍ଷା ବା ବିଶେଷଜ୍ଞ ହେବା ଆବଶ୍ୟକ ପଡ଼େ ନାହିଁ । ପାରିସ ଗ୍ରୀନ କିମ୍ବା ତୈଳ ସେଚନ ପ୍ରମୁଖ ରସାୟନିକ ଦ୍ରବ୍ୟଦ୍ୱାରା ନିୟନ୍ତ୍ରଣ କଲେ ଯେତେ ପରିମାଣରେ ଖର୍ଚ୍ଚ ଆବଶ୍ୟକ ତା ଠାରୁ ଏହା ସେତେଦୂର ଶସ୍ତା-ନୁହେଁ । ବରଂ ରସାୟନିକ ଜିନିଷର ବ୍ୟବହାର ଦ୍ୱାରା ଫଳ ବହୁଦିନ ପର୍ଯ୍ୟନ୍ତ ରହେ । ପୁଣି ରସାୟନିକ ଔଷଧମାନ ପୁନଃ ପୁନଃ ବ୍ୟବହାର

କରିବାକୁ ହୁଏ । ସୁତରାଂ ଆମଦେଶ ନିତାନ୍ତ ଗରିବ ବୋଲି ଖ୍ୟାତ ଏବଂ ଏଠାରେ ମେଲେରିଆର ପରିମାଣ ପୃଥିବୀର ଅନ୍ୟାନ୍ୟ ଦେଶ ଅପେକ୍ଷା ଅଧିକ । ଏଠାରେ ଉପରୋକ୍ତ ବ୍ୟବସ୍ଥା ପ୍ରୟୋଗ କରିପାରିବାର କୌଣସି ଯୁକ୍ତିଯୁକ୍ତ ଆବଶ୍ୟକତା ଦେଖାଯାଉ ନାହିଁ । କେବଳ ପ୍ରଶ୍ନ ଉଠିପାରେ ଯେ ଏଠାରେ 'ଗାମ୍ବୁସିଆ' ଧରଣର କୀଟ ଭକ୍ଷକ କୌଣସି ସ୍ଥାନୀୟ ମାଛ ମିଳିବା ସୁବିଧା କି ନାହିଁ । ଛବି (୬ ୭)ରେ ପ୍ରଦର୍ଶିତ ମାଛ ସବୁ ମଶାଛୁଆ ଇତ୍ୟାଦି ଖାଇବା ପାଇଁ ବିଶେଷ ଆଗ୍ରହ ଦେଖାନ୍ତି । ବର୍ଷ ତମାମ ଜଳଥିବା ଜଳାଶୟମାନଙ୍କରେ ସେମାନଙ୍କୁ ମହଜୁଦ କରି ରଖିବାକୁ ହେବ ।

କୀଟାଣୁ ଭକ୍ଷକ କେତେକ ଜଣାଶୁଣା ମାଛମାନଙ୍କ ନାମ ନିମ୍ନରେ ଦିଆଗଲା:—ଯେଉଁ ମାଛମାନେ ବହୁତ ପରିମାଣରେ ପୋକଜୋକ ଖାଇଯାନ୍ତି,ସେହି ମାଛମାନଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନଙ୍କ ମଧ୍ୟରୁ (୧)'ହାପ୍ଲୋଚିଲସ୍'(Haplochilus).(୨)'ବାରବାସ୍'(Barbus). (୩) 'ଆମବ୍ଲାଫାଇନଗୋଡ଼ାନ୍' (Amblyphayngodon). (୪) 'ଚିଲ୍' (Chela). (୫) 'ଇସୋମାସ' (Esomus). (୬) 'ରସ୍‌ବୋରା' (Rasbora). (୭) 'ଫ୍ରାଇସ୍ ଅଫ୍ କାରପସ୍' (Fries of carps) (ଛବି ୧, ୨, ୬ ଓ ୭ ଦ୍ରଷ୍ଟବ୍ୟ) ଆଦି ମାଛମାନଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଅନ୍ୟ ୪ର୍ଥ ଛବିରେ ଯେଉଁ ଜାତୀୟ ମାଛ ଟ୍ରିକୋଗେସ୍ଟାର (Trichogaster) ଓ 'ଓଫିସେଫେଲସ ପାଙ୍କଟାଟ୍' (Ophicephelas punctatus). 'ଷ୍ଟ୍ରେଟାସ୍ ମେନୁଲିଏସ (Straitus manulius) ଓ 'ଗାଚୁଆ' (Gachua) ବୋଲି ଦର୍ଶାଯାଇଛି ସେମାନେ ବହୁଭୋଜୀ ନହେଲେହେଁ କୀଟ ଭକ୍ଷକ ହିସାବରେ ବିଶେଷ ପାରଙ୍ଗମ ।

ତଳ ଲିଖିତ ଜାତୀୟ ମାଛ ନିର୍ମଳ ଜଳରେ ରହନ୍ତି । ସେଗୁଡ଼ିକ ମେଲେରିଆ ନିଦ୍ଧନ୍ତା ପାଇଁ ବିଶେଷ ସହାୟକ ।

୧ । ଖୋରସୁଲ୍ସ (Mungil corsuls) 'ଭେଟ୍‌କି' Bhetki (Lates caliciter) ଅଦ ବହୁ ସଂଖ୍ୟକ ଭେଟ୍‌କି ମାଛ ଦ୍ରୁତଗତିରେ ବହିଯାଉଥିବା କେନାଲର ଗୋଳିଆ ଜଳରେ ପ୍ରବେଶ କରି ମଶା ଡ଼ିମ୍ବମାନ ଖାଇ ଯାନ୍ତି ।

ଏହି ଜାତୀୟ ଜଣାଶୁଣା ମାଛମାନଙ୍କ ଜୀବନ ଇତିହାସ ଅଲୋଚନା କରିବା ଆଉ ଗୋଟିଏ ସମସ୍ୟା ।

(୧) 'ହାପ୍‌ଲୋଚିଲସ୍ ମିଲସ୍ତିଗମା' (Haplochilus melustigma) ଓ (୨) 'ପାଞ୍ଚାକ୍ସ' (Panchax) ଜାତୀୟ ମାଛ ବର୍ଷ ତମାମ ଜଳାଶୟମାନଙ୍କରେ ଛୁଆ ଦଅନ୍ତି । ଅନ୍ୟ ମାଛ ଆସି କୌଣସି ଭାବେ ଭରତି କରିବା ଆବଶ୍ୟକ ପଡ଼େ ନାହିଁ ! ଏମାନେ ମୁଖ୍ୟତଃ ଜଳର ଉପର ଭାଗରୁ ଅହାର ସଂଗ୍ରହ କରନ୍ତି (ଚିତ୍ର ୧) ।

୨ । 'ମୌରାଲ' (Mourala) ଜାତୀୟ ମାଛ ବିଶେଷ ଭାବେ ଜଳର ଉପରିଭାଗରୁ ଆହାର ସଂଗ୍ରହ କରନ୍ତି । ଏମାନେ ଜଳରୁଦ୍ଧ କ୍ଷୁଦ୍ର ଜଳାଶୟମାନଙ୍କରେ ବର୍ଷାକାଳରେ ବହୁ ପରିମାଣରେ ଡିମ୍ବ ଦଅନ୍ତି । ପୁରୁଣା ଓ ପରିତ୍ୟକ୍ତ ଜଳାଶୟମାନଙ୍କରେ 'ମୌରାଲ' ଜାତୀୟ ମାଛ ଆଦୌ ଡିମ୍ବ ଦଅନ୍ତି ନାହିଁ । ଏଣୁ ନିର୍ମଳ ଜଳଥିବା ସବୁ ପୋଖରୀରେ ମୌରାଲ ମାଛ ବହୁ ସଂଖ୍ୟାରେ ଡ଼ିମ୍ବ ଦଅନ୍ତି । ପୁଣି ଆଉ ମାଛ ଆଣି ଭରତି କରିବା ଅନାବଶ୍ୟକ । ପୋଖରୀରେ ମୋରାଲ ମାଛ ରଖିବାଦ୍ୱାରା କେବଳ ପୋଖରୀ ଗୁଡ଼ିକ କୀଟ ଡିମ୍ବରୁ ମୁକ୍ତ ହୋଇଯିବ । କୀଟ-ଭକ୍ଷକ ମାଛ ନଥିଲେ ପୋଖରୀମାନ ପୁନଃ ପୁନଃ ମାଛ ଆଣି ଭରତି କରିବା ଅନାବଶ୍ୟକ ।

କାରଣ ସେହିମାନେ ହିଁ ବର୍ଷ ବର୍ଷ ଧରି ବହୁ ସଂଖ୍ୟାରେ ବୃଦ୍ଧି ପାଇଯିବେ। (ଚିତ୍ର ୧)

୩ 'ବାରବାସ୍' (Barbus) (Barbus sophore and Barbus tieto) ଜାତୀୟ ମାଛ ରହିବା ପାଇଁ ପୋଖରୀମାନ ଏପରି ଭାବେ ଥିବା ଉଚିତ ଯେପରି ଗୋଟାଏ ମୁକ୍ତ ଜଳପଥ କିମ୍ବା ଧାନ କିଆରି ପୋଖରୀ ସହିତ ସଂଯୁକ୍ତ ହୋଇ ରହେ। ଏହି ମାଛମାନେ ଡିମ୍ବ ଦେବା ପାଇଁ ପୋଖରୀ ସହିତ ସଂଯୁକ୍ତ ଏହି ଜଳପଥ ବା ଧାନ କିଆରି ପ୍ରଭୃତିକୁ ଚାଲି ଯାଆନ୍ତି। ପରେ ବହୁ ସଂଖ୍ୟାରେ ପୋଖରୀ ଭିତରକୁ ଚାଲି ଆସନ୍ତି। ସେମାନେ ଏତେ ସଂଖ୍ୟାରେ ବଢିଯାଆନ୍ତି ଯେ ରାସ୍ତା ନିକଟସ୍ଥ କର୍ଦ୍ଦମ ପ୍ରଭୃତିରେ ମୁଦ୍ଧା ଯାଇ ପ୍ରବେଶ କରନ୍ତି।

୪ 'ରାସ୍‌ବୋରା' (Rasbora denicontus and Esomus daurieus) ଜାତୀୟ ମାଛ ମାନଙ୍କ ଆଚାର ବ୍ୟବହାର ବାରବାସ ମାଛଙ୍କ ପରି। ଏହି ମାଛମାନେ ସବୁବେଳେ ଧାନ ବିଲ ଇତ୍ୟାଦିରେ ରହନ୍ତି ଏବଂ ଧାନ ବିଲମାନଙ୍କୁ ମଶା ଡିମ୍ବ ଓ ଛୁଆ ଶୂନ୍ୟ କରି ଦିଅନ୍ତି। ଯେଉଁମାନେ ଏହି ଧାନ ବିଲ ନିକଟରେ ବାସ କରନ୍ତି ସେମାନେ ଦେଖି ପାରିବେ ଯେ ଧାନ ବିଲ-ମାନଙ୍କରୁ କୌଣସି ମଶା ଉତ୍ପତ୍ତି ହୁଏ ନାହିଁ। ଧାନ ଗଛର ଯଥେଷ୍ଟ ଅଂଶ ଜଳରେ ବହୁ ସମୟ ବୁଡ଼ି ରହିବା ଦ୍ୱାରା ଧାନ ଫସଲ ଭଲ ହୁଏ ଏବଂ 'ରାସବୋରା' ଓ 'ହାପ୍‌ଲୋଚିଲସ୍' ମାଛମାନେ ବହୁ ସଂଖ୍ୟାରେ ଛୁଆ ଉତ୍ପତ୍ତି କରନ୍ତି। (ଚିତ୍ର ୨ ଦ୍ରଷ୍ଟବ୍ୟ)

୫ ଚିଲା (Chela) ଫୁଲୁ (Phulo) ଚିଲବାକୁଲିଆ (Chela Bacalia) ପ୍ରଭୃତି ମାଛର ଆଚାର ବ୍ୟବହାର ବାରବାସ୍ (Barbes) ଜାତୀୟ ମାଛର ଆଚାର ବ୍ୟବହାର ସଙ୍ଗେ ସମାନ। (ଚିତ୍ର ୨ଦ୍ରଷ୍ଟବ୍ୟ)




PLATE I




PLATE II










PLATE III










PLATE IV



୬ ଟ୍ରିକୋଗାସ୍ଟାର (Trichogoster) ଜାତୀୟ, ମାଛ ଗଭୀର ଜଳମଧ୍ୟରେ ସେମାନଙ୍କ ଆହାର ଅନ୍ୱେଷଣ କରନ୍ତି । ମାତ୍ର ବେଳେ ୨ ଉପରକୁ ଉଠି ଜୀବାଣୁ ଲୁଆ ଡିମ୍ବ ପ୍ରଭୃତି ଯାହା ପାଆନ୍ତି ତାହା ଖାଇଦଅନ୍ତି । ଆର୍ଦ୍ର ଭୂମି ଓ ଅପରିଷ୍କୃତ ଜଳ ଆଦିରେ ସୁଦ୍ଧା ସେମାନେ ଆହାର ସଂଗ୍ରହ କରନ୍ତି । ଯେଉଁ ପୋଖରୀରେ ଅବଦ୍ଧ ଜଳ ଥାଏ, ସେଥିରେ ଏମାନେ ବହୁସଂଖ୍ୟାରେ ବଢୁଥିବାର ଦେଖା ଯାଏ । ଏକ ଜାଗାରୁ ଅନ୍ୟ ଏକ ଜାଗାକୁ ନିଆଅଣା କରିବା ପାଇଁ ଏହି ମାଛମାନେ ବିଶେଷ ପଟୁ । ଗୋଟାଏ କିରସିନ ଟିଣରେ ଗୁଡ଼ାଏ ଜଳ ଭରିତକରି ସେଥି ମଧ୍ୟରେ କେତେ ଗୁଡ଼ାଏ ଛୋଟ ଟ୍ରିକୋଗେସ୍ଟର ମାଛ ରଖିବ । ଟିଣଟିରେ କେବଳ ଗୋଟିଏ ଛିଦ୍ର ରଖି ତାକୁ ଭଲଭାବେ ବନ୍ଦକରି ଦେବ । ଏପରି ରଖି ସେହି ମାଛମାନଙ୍କୁ ଯେ କୌଣସି ଦୂରସ୍ଥାନକୁ ନିଆଯାଇ ପାରେ । ଅନେକ ଦିନ ପର୍ଯ୍ୟନ୍ତ ଟିଣମଧ୍ୟରେ ଥିବା ଜଳକୁ ବଦଳାଇବାର ଆବଶ୍ୟକତା ପଡ଼ିବ ନାହିଁ । (ଚିତ୍ର ୩ ଦ୍ରଷ୍ଟବ୍ୟ)

୭ 'ଓଫିସିଫିଲେଡ଼' (Ophicephalidae) ଜାତୀୟ ମାଛମାନେ ବିଶେଷ ଶିକାରୀ ଥିବା ହେତୁ ଏମାନଙ୍କୁ ପୋଖରୀ ମଧ୍ୟରେ ନେଇ ଛାଡ଼ିବା ଅନୁଚିତ । ଅବଶ୍ୟ ଲୁଆ ବେଳେ ଏହି ମାଛମାନେ ବହୁ ପରିମାଣରେ କୀଟମାନଙ୍କୁ ଖାଇଯାନ୍ତି; ତଥାପି ଅନ୍ୟ ମାଛମାନଙ୍କ ନିରାପତ୍ତା ଦୃଷ୍ଟିରୁ ଏହି ମାଛଙ୍କୁ ପୋଖରୀରେ ପୋଷି ରଖିବା ଠିକ୍ ନୁହେଁ । ଏହି ଜାତୀୟ ମାଛ ମଧ୍ୟରୁ ଓଫିଚିଫାଲସ୍ ଷ୍ଟ୍ରେଟାସ (Ophicephalus straitus) ନାମକ ମାଛ ବଡ଼ ନିରୀହ । ଟାଁମାନଙ୍କରେ ଥିବା ନର୍ଦ୍ଦମାମାନଙ୍କରେ ଏହି ମାଛମାନେ ବହୁ ସଂଖ୍ୟାରେ ଲୁଆ ଦିଅନ୍ତି । ଜଳ ଉପରେ ତୃଣ ଲତା ଇତ୍ୟାଦି ଯେତେ ଗହଳ ହୋଇଥିଲେ ସୁଦ୍ଧା ଏହି ମାଛମାନେ କୌଣସି ଜୀବାଣୁ ଦେଖିବା ମାତ୍ରେ ଭକ୍ଷଣ କରିଦଅନ୍ତି । ଗାମ୍ବୁସିଆ ଜାତୀୟ ମାଛ ସହିତ ଏହି ମାଛ-

ମାନଙ୍କରେ ବିଶେଷ ସାଦୃଶ୍ୟ ରହିଛି । ବିଶେଷତଃ କୀଟ-ଭକ୍ଷକ ହିସାବରେ ଏହି ମାଛମାନେ ଗାମ୍ବୁସିଆ ମାଛ ସଦୃଶ (ଚିତ୍ର ୮ ଦ୍ରଷ୍ଟବ୍ୟ) ଏଦେଶର ମେଲେରିଆ ନିବାରଣ ପ୍ରସଙ୍ଗରେ ମାଛମାନଙ୍କ କାର୍ଯ୍ୟ କଳାପ ଆଲୋଚନା କରିବା ବେଳେ ମେଲେରିଆ ନିବାରଣରେ ସାହାଯ୍ୟକାରୀ ବିଭିନ୍ନ କେତେକ ମାଛଙ୍କ ବିଷୟ ଜାଣିବାକୁ ହେବ । ମାତ୍ର କାରପ (Carp) ନାମକ ଏକ ଗୋଷ୍ଠୀର ମାଛ, ନାନାବର୍ଣ୍ଣ ଓ ଆକାର ବିଶିଷ୍ଟ ।

(୧) ଲେବ ଓ ରୋହିତା (Labeorohite) (ଚିତ୍ର ୭ ଦ୍ରଷ୍ଟବ୍ୟ) (୨) କାଟ୍‌ଲା କାଟ୍‌ଲା (catla catla) (ଚିତ୍ର ୬) (୩) 'କାର୍ହିନା ମ୍ରିଗଲା (Cerrhina Mrigala) (ଚିତ୍ର ୬) (୪) 'ଲେବିଓ କ୍ଲାବସୁ' (Labeo clabasu) (ଚିତ୍ର ୬) (୫) କରେହ୍ନା ରିବା (Cirrhina reba) କାରପ୍ ଜାତୀୟ ମାଛ ମଧ୍ୟରେ ଏହି ୫ ପ୍ରକାର ମାଛ ବିଶେଷ ଭାବେ ପରିଚିତ । ଏହି ଜାତୀୟ ମାଛମାନଙ୍କ ମଧ୍ୟରେ ଆଉ ଛ ପ୍ରକାର ଛୋଟ ମାଛ 'ବାରବାସ୍ ଡେନିଡୋନିକସାସ୍' ଓ ଚେଲା ପ୍ରଭୃତି ମାଛ ସମ୍ବନ୍ଧେ ପୂର୍ବରେ କୁହାଯାଇଛି । ସୁତରାଂ ଏଠାରେ ସେମାନଙ୍କର କୌଣସି ବର୍ଣ୍ଣନା କରାଯାଇ ନାହିଁ । ଏହି ସବୁ ମାଛ ମେଲେରିଆ ନିୟନ୍ତ୍ରଣ ଦିଗରେ ଏକ ଗୁରୁତ୍ୱପୂର୍ଣ୍ଣ ଭାଗ ନେଇଥାଅନ୍ତି । କେବଳ ସେତିକି ନୁହେଁ; ଅନ୍ୟ ଜାତୀୟ ମାଛମାନଙ୍କଠାରୁ ସେମାନଙ୍କ କାର୍ଯ୍ୟ ଅପେକ୍ଷାକୃତ ଗୁରୁତର । ଏମାନଙ୍କ ମଧ୍ୟରୁ ଅନେକେ ପ୍ରୌଢ଼ାବସ୍ଥାରେ ଥିବା ୫ ଫୁଟ ପର୍ଯ୍ୟନ୍ତ ଲମ୍ବ ଓ ୫୦ ଠାରୁ ୧୬୦ ପାଉଣ୍ଡ ପର୍ଯ୍ୟନ୍ତ ଓଜନ ବିଶିଷ୍ଟ ହୁଅନ୍ତି । ଏପରି ଅବସ୍ଥାରେ ସେମାନେ ଜଳର ଉପରି ଭାଗରୁ ଆହାର ସଂଗ୍ରହ କରିବା ପାଇଁ ଅକ୍ଷମ ହେଲେହେଁ ସେମାନଙ୍କ ବାଲ୍ୟାବସ୍ଥାରେ ବିଭିନ୍ନ ସ୍ତର ମଧ୍ୟରେ ସେମାନେ ବିଶେଷ ଭାବେ ଜଳ ଉପରୁ ଆହାର ଗ୍ରହଣ କରନ୍ତି ଏବଂ ମେଲେରିଆ ନିୟନ୍ତ୍ରଣ କାର୍ଯ୍ୟରେ ବଙ୍ଗଦେଶରେ ଗାଁ ଗହଳରେ ବିଶେଷ ସହାୟତା କରନ୍ତି ।




PLATE V




PLATE VI






# PLATE VII









ବିଶେଷତଃ ଏ ଅଞ୍ଚଳର ଲୋକେ ଯେପରି ଅବସ୍ଥାରେ ଶସ୍ୟ ଉତ୍ପାଦନ କରନ୍ତି ସେ ଦୃଷ୍ଟିରୁ ମାଛମାନଙ୍କ ସାହାଯ୍ୟ ବିଶେଷ ପ୍ରୟୋଜନୀୟ ।

## ଭାରତର କେତେକ ସ୍ଥାନୀୟ କୀଟଭକ୍ଷକ ମାଛ

ମଶା ଛୁଆଙ୍କୁ ଶିକାର କରିବାକୁ ଏ ଦେଶରେ ଅନେକ ଧରଣର ମାଛ ଅଛନ୍ତି । କେଉଁ ସ୍ଥାନରେ କିପରି ମାଛ ଡିମ୍ବ ଦିଅନ୍ତି ସେ ସମ୍ବନ୍ଧରେ ୱିଲ୍ସନ୍ ନିମ୍ନମତେ ନିର୍ଦ୍ଦେଶ ଦେଇ ଅଛନ୍ତି:—

୧ । ପୋଖରୀ, ବଡ଼ ଜଳାଶୟ ଓ ଆର୍ଦ୍ର ଜାଗାମାନଙ୍କରେ 'ଚେଲ', 'ରିସ୍‌ବୋରା', 'ହାପଲୋଚିଲସ୍' ବାରବାସ୍ ପ୍ରଭୃତି ମାଛ ଡିମ୍ବ ଦିଅନ୍ତି ।

୨ । ଧାନ୍ୟକ୍ଷେତ୍ର, କୂଅ, ଛୋଟ ଜଳାଶୟମାନଙ୍କରେ 'ଚେଲ' 'ହାପଲୋଚିଲସ୍' ପୋଲିଅକାନଥାସ୍ ଜାତୀୟ ମାଛ ଡିମ୍ବ ଦିଅନ୍ତି ।

୩ । ଲୁଣିଆ ଜଳାଶୟରେ 'ଥିରେନାନ୍', ପ୍ଲାଟ୍ୟାକେନ୍ଥାସ୍ ପ୍ରଭୃତି ମାଛଙ୍କ ଉପଯୁକ୍ତ ଉତ୍ପତ୍ତି ସ୍ଥଳ ।

ଭାରତବର୍ଷର ଅନେକ ସୂକ୍ଷ୍ମ ଦୃଷ୍ଟି ସମ୍ପନ୍ନ ଲୋକେ 'ହାପ୍-ଲୋଚିଲସ' ଜାତୀୟ ବିଭିନ୍ନ ରକମର ମାଛ ମଶା ଡିମ୍ବଧ୍ୱଂସ ଦିଗରେ ବିଶେଷ ସାହାଯ୍ୟ କରନ୍ତି ବୋଲି ଏକମତ । 'ପାଇକୁ' (Paiku) ଓ 'ଖଜୁରା' (Khajura) ନାମକ ଦୁଇ ପ୍ରକାର ମାଛ ବହୁବର୍ଷ ଧରି ବୋମ୍ବେ ପ୍ରଦେଶର କୂଅମାନଙ୍କରେ ପୋଷା ହେଉଥିଲେ । ଶ୍ରୀଯୁକ୍ତ ଆଟ୍‌କିନ୍ (Actken) 'ପାଇକୁ' ଜାତୀୟ ମାଛକୁ ବୋମ୍ବେ ପ୍ରଦେଶର ଝରଣାମାନଙ୍କରେ ଛାଡ଼ି ଥିଲେ । ଏହି ମାଛମାନଙ୍କୁ ସେ ସ୍କୁଟିସ୍' (Scooties) ନାମ ଦେଇଥିଲେ । ଡାକ୍ତର ଚୌଧୁରୀ ଓ ସିର୍ଣ୍ଣୋଲ କହନ୍ତି ଯେ ଚେଲ ଜାତୀୟ କୌଣସି ମାଛ ଜଳ ଉପରି ଭାଗରୁ ଆହାର ଗ୍ରହଣ କରନ୍ତି ନାହିଁ । ପୁଣି 'ରସବୋରା ଡେନ୍‌କୋନିସ'

ଜାତୀୟ ମାଛ କେବଳ ଫଳ ମୂଳ ଖାଏ । ମାନ ଜନ୍‌ସନ କହନ୍ତି ଯେ ଏହି ଉଭୟ ମତ ଠିକ୍ ନୁହେଁ ।

ମାଛଦ୍ୱାରା ଜୀବାଣୁ ଧ୍ୱଂସ ପାଇଁ ଜଳ ଉପର ଭାଗରେ ଯେତେ ଜାଗା ଆବଶ୍ୟକ ସେ ସଂକ୍ରାନ୍ତରେ ଡ଼ାକ୍ତର ଚୌଧୁରୀ ଓ ସ୍ନେଲ କହନ୍ତି ଯେ 'ହାପ୍‌ଲୋକେଇଲସ' ମାଛରୁ ତିନି ଜାତିର ମାଛ ୧ ୧/୨ × ୨ ୧/୨ ବର୍ଗଫୁଟ ପରିମିତ ଗୋଟାଏ ଛୋଟ ପୋଖରୀର ଜୀବାଣୁ ବୃଦ୍ଧି ନିୟନ୍ତ୍ରଣ କରି ପାରିବେ ।

## ଜୀବାଣୁଭକ୍ଷକ ମାଛ କିପରିଭାବେ ଆବଶ୍ୟକ ହୁଏ

୧ । ମାଛଗୁଡ଼ିକ ଛୋଟ ଆକାର ବିଶିଷ୍ଟ ହେବା ଆବଶ୍ୟକ । ତାହାହେଲେ ସେମାନେ ଯେପରି ଦଳ ଉପରେ ଥିବା ସୂତାଦଳ ଇତ୍ୟାଦି ମଧ୍ୟରେ ସ୍ୱଚ୍ଛନ୍ଦରେ ଯାତାୟାତ କରି ପାରିବେ ।

୨ । ସେମାନେ ଟିକିଏ ବଳୁଆ ହେବା ଉଚିତ । ଗଭୀର ଓ କମ୍ ଜଳ ଉଭୟରେ ସେମାନେ ସ୍ୱଚ୍ଛନ୍ଦରେ ରହି ପାରିବେ ।

୩ । ସେମାନେ ଅବଦ୍ଧ ଜଳରେ ଅନାୟାସରେ ଛୁଆ ଉତ୍ପତ୍ତି କରି ପାରିବେ ।

୪ । ସେଗୁଡ଼ିକ ଏକସ୍ଥାନରୁ ଅନ୍ୟସ୍ଥାନକୁ ପଠାଇବା ବେଳେ ସେମାନେ ଯେପରି ନଷ୍ଟ ହୋଇ ନ ଯାନ୍ତି ।

୫ । ସେମାନେ ଏପରି ହୋଇଥିବେ ଯେ ସେମାନଙ୍କୁ ସହଜରେ ଧରି ହେବ ନାହିଁ । ମନୁଷ୍ୟମାନଙ୍କୁ ମଧ୍ୟ ସେମାନେ ସହଜରେ ଧରିଦେଇ ନଥିବେ ।

୬ । ଖାଦ୍ୟ ହିସାବରେ ସେ ମାଛ ଗୁଡ଼ିକର କୌଣସି ମୂଲ୍ୟ ନଥିବା ଆବଶ୍ୟକ ।

୭ । ସେମାନେ ଜଳର ଉପର ଭାଗରୁ ସେଥିର ଆହାର ସଂଗ୍ରହ କରି ପାରିବେ । ସେମାନେ କୀଟ-ଭକ୍ଷକ ହୋଇଥିବା ଆବଶ୍ୟକ ।

## ମାଛଦ୍ୱାରା ମଶା ଉତ୍ପତ୍ତି ନିୟନ୍ତ୍ରଣ କରିବାରେ କେତେକ ଅସୁବିଧା—

ମେଲେରିଆ ନିୟନ୍ତ୍ରଣ ଦିଗରେ ମାଛ ବ୍ୟବହାର କରିବାରେ କେତେକ ଅପକାର:—

୧ । ବହୁ ସଂଖ୍ୟାରେ ମାଛ ଥିଲେ କେବଳ ଉପକାର ହୁଏ ।

୨ । ଯଥେଷ୍ଟ ପରିମାଣରେ ମାଛ ଥିଲେ ସୁଦ୍ଧା ଜଳ ଉପରେ କୌଣସି ତୃଣ ଲତା ଓ ଅନ୍ୟାନ୍ୟ ପ୍ରକାର ଭାସମାନ ଅଳିଆ ରହିବା ଦ୍ୱାରା ଉପକାର ହୁଏ ନାହିଁ ।

୩ । ଛୋଟ ପିଲାମାନେ ସୁଦ୍ଧା ସୁଯୋଗ ପାଇଲେ ମାଛ ଧରି ପାରିବେ ।

୪ । ଅନଭିଜ୍ଞ ଉତ୍ସାହୀ ଲୋକେ ଅନ୍ୟର ବଡ଼ ବଡ଼ ଧରଣର ମାଛ ସେହି ଜଳାଶୟରେ ପୋଷିବା ଦ୍ୱାରା ସେମାନେ ଛୋଟ ମାଛ-ମାନଙ୍କୁ ଶିକାର କରନ୍ତି ।

୫ । କୂଅମାନଙ୍କରେ ଆବଶ୍ୟକୀୟ ଖାଦ୍ୟ ନଥିଲେ ମାଛମାନେ ସେମାନଙ୍କର ଛୁଆମାନଙ୍କୁ ଖାଇଯାନ୍ତି । ସୁତରାଂ ମାଛ ଉତ୍ପତ୍ତି ସ୍ଥଳରେ କୌଣସି କୌଣସି ସମୟରେ ପୁଣି ମାଛ ଛାଡ଼ିବା ଆବଶ୍ୟକ ହୁଏ ।

୬ । ମାଛମାନେ ସୁଖ ସ୍ୱଚ୍ଛନ୍ଦରେ ଅଛନ୍ତି କି ନାହିଁ ଏବଂ ଆବଶ୍ୟକୀୟ ସଂଖ୍ୟାରେ ଅଛନ୍ତି କି ନାହିଁ ସେ ସଂକ୍ରାନ୍ତରେ ଘନ ଘନ ପରିଦର୍ଶନ କରିବା ଆବଶ୍ୟକ ହୁଏ । ପୁଣି ଜଳ ଉପରେ ଭାସମାନ

ତୃଣ ଦଳ ଓ ଅନ୍ୟାନ୍ୟ ତରୁଲତା ଦ୍ୱାରା ପୂର୍ଣ୍ଣ ନହୁଏ ସେଥିପାଇଁ ବାରମ୍ବାର ଦୃଷ୍ଟି ଦେବା ଉଚିତ ।

୭ । ଏହି ପରିଦର୍ଶନ କାର୍ଯ୍ୟ କରିବା ପାଇଁ ଏବଂ ବଭିନ୍ନ ମାଛ ଉତ୍ପତ୍ତି ସ୍ଥଳରେ ଯଥେଷ୍ଟ ପରିମାଣରେ ମାଛ ଯେପରି ମହଜୁଦ ରଖା-ଯାଏ ତାର ବନ୍ଦୋବସ୍ତ କରିବା ପାଇଁ କେତେକ ଅଫିସର ନିଯୁକ୍ତ ହେବା ଦରକାର । ମେଲେରିଆ ନିୟନ୍ତ୍ରଣ ପାଇଁ ଯେଉଁ ଅଞ୍ଚଳରେ କୌଣସି କାରଣବଶତଃ ଅନ୍ୟାନ୍ୟ ବ୍ୟବସ୍ଥା ପ୍ରୟୋଗ କରିବା ଅସମ୍ଭବ ହୁଏ ସେ ଅଞ୍ଚଳରେ ମେଲେରିଆ ନିବାରଣ ପାଇଁ ମାଛ ପୋଷିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ମେଲେରିଆ ନିୟନ୍ତ୍ରଣ ପାଇଁ ଅନ୍ୟ କେତେକ ସ୍ୱାଭାବିକ ବ୍ୟବସ୍ଥା ନିମ୍ନରେ ବର୍ଣ୍ଣିତ ହେଲା ।

ଲୁଣିଆ ଜଳର ରୂପ ପରିବର୍ତ୍ତନ:—

ପୂର୍ବ ଉପକୂଳ ଅଞ୍ଚଳରେ ଥିବା ଜଳାଶୟମାନଙ୍କର ଜଳର ହ୍ରାସ-ବୃଦ୍ଧି ପର୍ଯ୍ୟାୟ କ୍ରମେ ତାର ରୂପ ସ୍ୱାଭାବିକ ଭାବେ ପରିବର୍ତ୍ତନ ହେବାଦ୍ୱାରା ସେହି ସେହି ଅଞ୍ଚଳରେ ମେଲେରିଆ ଆୟତ୍ତ ହୋଇଥାଏ ।

ଜଳର ଲୁଣିଆ ଅଂଶ କିପରି ହ୍ରାସ ହୁଏ:—

ଉତ୍ତର ହଲାଣ୍ଡରେ 'ହାଇଣ୍ଟରଜ' ନାମକ ଯେଉଁ ଅଞ୍ଚଳ ଅଛି ସେହି ଅଞ୍ଚଳରେ ଜମିକୁ କୃଷି ଉପଯୋଗୀ କରିବା ବେଳେ ଜଳଘାଟ ଗୁଡ଼ିକ ଶୁଷ୍କ ଓ ନିର୍ମଳ ହୋଇଥାଏ । ଫଳରେ ସ୍ଥାନୀୟ ରୋଗ ସଂକ୍ରାମକ ଜୀବାଣୁ **A. Maculpenis var Atroparvus** ଧ୍ୱଂସ ହୋଇ ତାର ସ୍ଥାନ ଆଉ ଗୋଟାଏ ଅସଂକ୍ରାମକ ନିରାପଦ ଜୀବାଣୁ **var messae** (ଭର ମିସେଇ) ଅଧିକାର କରିଥାଏ ।

ଲୁଣିଆ ଜଳର ଅଭିବୃଦ୍ଧି:—

ଅଲବେନିଆର ‘ଡୁରାଜୋ’ ଅଞ୍ଚଳରେ ଅନିର୍ମଳ ଜୀବାଣୁ ଯୁକ୍ତ ଆର୍ଦ୍ର ଭୂମିରେ ପ୍ରବେଶ କରେ । ସମୁଦ୍ର ଜଳ ଉଚ୍ଚାଣିର ଆଦାନ ଓ ନିଷ୍କାସନ କ୍ରିୟା ଦ୍ୱାରା A elutes (ଏ ଆଲୁଟାସ୍) ନାମକ ରୋଗର ସଂକ୍ରାମକ ଜୀବାଣୁ ନଷ୍ଟ ହୋଇଯାଏ । ଫଳରେ ଲାଭଜନକ ମାଛ ବ୍ୟବସାୟ ପାଇଁ ଗୋଟିଏ କ୍ଷେତ୍ର ସୃଷ୍ଟି ହୁଏ ।

ଛୁଆ ଓ ଡିମ୍ବର ଖାଦ୍ୟ ଯୋଗାଣର ପରିବର୍ତ୍ତନ:—

‘ଜାଭା’ ଦ୍ୱୀପ ଉପକୂଳ ଅଞ୍ଚଳର ଯେଉଁ ସବୁ ସମୁଦ୍ର ଜଳ ପୂର୍ଣ୍ଣ ମାଛ ଗାଡ଼ିଆମାନ ଅଛି ସେଗୁଡ଼ିକ ସାମୟିକ ଭାବରେ ଜଳ ନିଷ୍କାସନ ଓ ଶୁଷ୍କ କରିବା ଦ୍ୱାରା ପୋଖରୀଗୁଡ଼ିକର ଉପର ଭାଗରେ ଥିବା ତୃଣଲତା ଇତ୍ୟାଦ ନିଷ୍ଟ ହୋଇଯାଏ । ତଦ୍ୱାରା ଜଳସ୍ଥମାଛ ଓ A. Sundhicus (ଏ ସାଣ୍ଡିକାସ୍) ଜୀବାଣୁ ଡିମ୍ବ ଛୁଆ ସୁଦ୍ଧା ଧ୍ୱଂସ ହୋଇ ତା ପରିବର୍ତ୍ତେ ଆଉ ଏକ ପ୍ରକାର ତୃଣ ପୋଖରୀମାନଙ୍କ ନିମ୍ନ ଦେଶରେ ଜାତ ହୁଏ । ଜୀବାଣୁ ଛୁଆମାନଙ୍କୁ ଆଉ ଖାଦ୍ୟ ଓ ରହିବା ପାଇଁ ଆଶ୍ରୟ ସ୍ଥଳ ମିଳେ ନାହିଁ । ଅଥଚ ମାଛମାନଙ୍କୁ ଯଥେଷ୍ଟ ପୁଷ୍ଟିକର ଆହାର ମିଳେ ।

ଉପୃତ୍ର ସ୍ଥଳର ରୂପ ପରିବର୍ତ୍ତନ:—

ଘାସ ଓ ଅନାବଶ୍ୟକ ତୃଣ ଲତା ଇତ୍ୟାଦ ବାହାର କରି ଗୋଟାଏ ଆନୋଫେଲିସ୍ ମଶା ରହିବା ପାଇଁ ଉପଯୁକ୍ତ ଥିବା ଜଳାଶୟକୁ ଗୋଳିଆ ଓ ପୂତିଗନ୍ଧମୟ କରିବା ଦ୍ୱାରା ମଶା ଆଉ ରହନ୍ତି ନାହିଁ ।

ଆଲୋକ ଓ ଛାୟାର ପରିବର୍ତ୍ତନ:—

ସଂକୀର୍ଣ୍ଣ ଓ ଅପ୍ରଶସ୍ତ ଜଳ ସ୍ରୋତ ତଟ ଦେଶର ଧାରେ ଧାରେ ଉପଯୁକ୍ତ ସଂଖ୍ୟାରେ ଗହଳିଆ ତୃଣ ଲତା ରୋପଣ କଲେ ସେହି

ଜଳସ୍ରୋତ ଉପରେ ସୂର୍ଯ୍ୟାଲୋକ ପଡ଼େ ନାହିଁ ଏବଂ ଫଳରେ ଅନ୍ଧାର ହୋଇ ମଶା ମରିଯାଆନ୍ତି, ଅଥବା ସବୁବେଳେ ଜଳଯୁକ୍ତ ଜାଗା-ମାନଙ୍କରେ ଗହଳ ପରିବା ଫଳ ଇତ୍ୟାଦ ଲଗାଇବା ଦ୍ୱାରା ସେହି ସ୍ଥଳ ଗୁଡ଼ିକ ମଶାଶୂନ୍ୟ ହୋଇଯାଏ । ଏପରି ବ୍ୟବସ୍ଥା ଆସାମ ଓ ସିଲୋନ ଦେଶରେ ଖୁବ୍ ସଫଳ ହୋଇଛି । Aminimus (ଏମିନିମାସ୍) ଓ Aculicifacies (ଏକ୍ୟୁଲିସିଫେସିସ୍) ନାମକ ରୋଗ-ସଂକ୍ରାମକ ମଶା ସୂର୍ଯ୍ୟାଲୋକ ପଡ଼ୁଥିବା ଜଳ ଉପରେ ରହିବା ପାଇଁ ଭଲ ପାଆନ୍ତି । ସୁତରାଂ ଜଳ ଉପରେ ଛାୟା ପଡ଼ି ଅନ୍ଧାରିଆ ହେଲେ ସେହି ମଶାମାନେ ରହନ୍ତି ନାହିଁ ।

ପ୍ରାକୃତିକ ଛାୟାଦାନ କରୁଥିବା ଗଛମାନ ଯେପରି ତରତରରେ କାଟି ଦିଆ ନଯାଏ, ସେ ସମ୍ବନ୍ଧରେ ଏହା ଗୋଟାଏ ଶିକ୍ଷା । ମାଳୟ ଦେଶରେ 'A Maculatus' ( ଏ ମାକ୍ୟୁଲଲେଟାସ୍ ) ନାମକ ରୋଗ-ସଂକ୍ରାମକ ମଶାର ଅଭ୍ୟାସ ବ୍ୟବହାର ସଂକ୍ରାନ୍ତରେ ସାର୍ ମାଲ୍‌କାମ ଓ୍ୟାଟ୍‌ସନ ପ୍ରକାଶ କରିବା ପୂର୍ବରୁ ଅନେକ ସ୍ୱାସ୍ଥ୍ୟକର ଜଳା ଅବବାହିକାକୁ ମରଣ-କୁଣ୍ଡରେ ପରିଣତ କରାଯାଇ ଥିଲା ।

ଏହା ଜାଣି ରଖିବା ଉଚିତ ଯେ ଛାଇ ନ ହେବା ଶବ୍ଦଟି ଗୋଟାଏ ଆପେକ୍ଷିକ ଶବ୍ଦ । ଗୋଟାଏ ମଶା ପକ୍ଷେ ଦୀର୍ଘ ଘାସ ଛାୟା ଦାନପାଇଁ ଯଥେଷ୍ଟ ।

ଗହଳ ଛାୟା 'ଏମିନିମାସ୍' (Aminimus) ମଶା ବିରୁଦ୍ଧରେ ଉପଯୁକ୍ତ ସେନ ବୋଲି ଧରାଯାଏ । ଯେଉଁ ଜାଗା ତଳେ ଘାସ ଉଠି ପାରେ ନାହିଁ ଏପରି ଜାଗା ସେହି ।

ପ୍ରାକୃତିକ ଶତ୍ରୁର ପରିଚୟ:—

ଜଳର ଉପରି-ଭାଗରୁ ଆହାର ସଂଗ୍ରହ କରୁଥିବା 'ଗାମ୍ବୁସିଆ' ମାଛ ପ୍ରତି ବିଶେଷ ଦୃଷ୍ଟି ଦିଆଯିବା ଉଚିତ । ଯେହେତୁ ଏହା ଯେ

କୌଣସି ଜଳବାୟୁରେ ରହେ ଏବଂ ଯେ କୌଣସି ଜଳବାୟୁ ମଧ୍ୟରେ ଏମାନେ ଅସଂଖ୍ୟ ମାତ୍ରାରେ ବଢ଼ନ୍ତି । କିନ୍ତୁ ଜଳ ପ୍ରବାହ ଓ ଗହଳିଆ ତୃଣଲତା ଏମାନଙ୍କ ପକ୍ଷେ ବିଶେଷ ଅସୁବିଧାଜନକ । କେବଳ ଏହି ବ୍ୟବସ୍ଥାଦ୍ୱାରା ପୂର୍ଣ୍ଣ ଫଳ ଆଶା କରାଯାଇ ନ ପାରେ । ମାତ୍ର ବେଳେ ବେଳେ ଅନୁକୂଳ କାରଣମାନ ଉପସ୍ଥିତ ହେଲେ ଏହାର ପ୍ରଭାବ ବିଶେଷ ଫଳପ୍ରଦ ହୋଇଥାଏ ।

ତୃଣଦଳ ସମାବେଶ ବ୍ୟବସ୍ଥା:—

କୌଣସି ଝରଣା ଦେହରେ କିମ୍ବା ଜଳସ୍ରୋତ ମୁଖରେ ସଦ୍ୟ କଟା ହୋଇଥିବା ନୀଳ ତୃଣ ଦଳ ସ୍ଥାପନ କରିବାକୁ ହେବ । ତୃଣ ଦଳଗୁଡ଼ିକୁ ଏପରି ଭାବେ କାଟିବ ଯେପରି ସେଗୁଡ଼ିକ ଗୋଟାଏ ଅଙ୍ଗୁଳି ପରିମିତ ପ୍ରସ୍ତ ହୋଇ ଥିବ ଏବଂ ତାଦେହରେ ପତ୍ର ଲାଗିଥିବ । ସେହି ତୃଣ ଖଣ୍ଡମାନ ଏପରି ଭାବେ ରଖିବ ଯେପରି ତାର ମାଞ୍ଜୁଳା ପତ୍ରମାନ ଜଳ ଉପରକୁ ରହିବ ଏବଂ ଜଳସ୍ରୋତ ବହିବାରେ କୌଣସି ପ୍ରତିବନ୍ଧକ ନ ରହିବ । ତୃଣମାନ ଗୋଡ଼ରେ ଉତ୍ତମରୂପେ ଲୁଦ ଏପରି ଭାବେ ଏକାଠି କରିବାକୁ ହେବ । ଯେପରି ସବୁଯାକ ୨ ଠାରୁ ୩ ଫୁଟ ଗଭୀର ଆଚ୍ଛାଦନ ରୂପେ ଦେଖାଯାଉ ଥିବ । ଏହି ବ୍ୟବସ୍ଥା କରିବା ପୂର୍ବରୁ ସ୍ରୋତ ମଝିରେ ପଡ଼ିଥିବା ଗଛ, ପଥର ପ୍ରଭୃତି ବାହାର କରି ଦେବାକୁ ହେବ । ଜଳସ୍ରୋତ ବିଶେଷ ବେଗଗାମୀ ହୋଇଥିଲେ ଏକତ୍ର କରାଯାଇ ଥିବା ତୃଣଦଳ ନିମ୍ନଅଂଶ ଦୁଇଶ୍ରେଣୀରେ ଖୁଣ୍ଟିପୋତି ମଜଭୁତ କରି ରଖିବାକୁ ହେବ କିମ୍ବା ଅନ୍ୟ କୌଣସି ଧରଣର ଅଡ଼ା ପକାଇବ ଯେପରି ତୃଣଦଳ କୌଣସି ଭାବେ ସ୍ଥାନଭ୍ରଷ୍ଟ ନ ହେବ ।

ଏହି ଜଳର ରୂପ ବଦଳାଇବା ଏବଂ ମେଲେରିଆ ସଂକ୍ରାମକ ମଶା ରହିବାପାଇଁ ତାକୁ ଅନୁପଯୁକ୍ତ କରିବା, ଏହି ବ୍ୟବସ୍ଥାର ଉଦ୍ଦେଶ୍ୟ ।

କାରଣ ମେଲେରିଆ ସଂକ୍ରାମକ ମଶା ପ୍ରାୟ ନିର୍ମଳ ଜଳରେ ଛୁଆ ଉତ୍ପନ୍ନ କରନ୍ତି । ସୁତରାଂ ସଦ୍ୟ କଟା ନୀଳ ତୃଣର ବ୍ୟବହାର କରାହୁଏ ।

କାଲସିକ୍ ମଶାମାନେ ଧାତୁ ମିଶ୍ରିତ ଜଳରେ ଅବାଧରେ ଛୁଆ ଉତ୍ପନ୍ନ କରନ୍ତି । ଏଣୁ ଯେଉଁଠାରେ ମଶାମାନଙ୍କ ବିରୁଦ୍ଧରେ ଅଭିଯାନ ଚଳାଇବାକୁ ହୁଏ ସେଠାରେ ଏହି ବ୍ୟବସ୍ଥା ଉପଯୁକ୍ତ ନୁହେଁ ।

ପାହାଡ଼ ତଳିଆ ଅଞ୍ଚଳରେ ବର୍ଷା ଋତୁର ଠିକ୍ ପୂର୍ବରୁ ବହୁ ରୋଗ ସଂକ୍ରାମକ ମଶାମାନେ ଝରଣା ଓ ଜଳସ୍ରୋତ ଇତ୍ୟାଦିରେ ଜନ୍ମ ଦଅନ୍ତି । ସେହିପରି ଅଞ୍ଚଳ ପ୍ରତି ଏହି ତୃଣ ଦଳ ସମାବେଶ ବ୍ୟବସ୍ଥା ବିଶେଷ ଭାବେ ପ୍ରଯୁଜ୍ୟ । ବର୍ଷା ଶେଷ ହେଲେ ଏହି ତୃଣଦଳ ଭାସିଯାଏ । ମାତ୍ର ସେତେବେଳକୁ ଜଳ ସ୍ରୋତମାନ ମଶା ଉତ୍ପତ୍ତି ଦୃଷ୍ଟିରୁ ନିରାପଦ ହୋଇ ଥାଏ ।

ମଶା ବିରୁଦ୍ଧରେ ଯୁଦ୍ଧ କରୁଥିବା ବୃକ୍ଷଲତା:—

ମେଲେରିଆ ଓ ଅନ୍ୟାନ୍ୟ ମଶାଦ୍ୱାରା ଜାତ ରୋଗ ବିରୁଦ୍ଧରେ ଅଭିଯାନ ଚଳାଇବା ବେଳେ ମଶାମାନେ କେଉଁ ଜିନିସକୁ ଭଲ ପାଆନ୍ତି ଓ କେଉଁ ଜିନିସକୁ ଭଲ ପାଆନ୍ତି ନାହିଁ ତାହା ଜାଣିବା ଉଚିତ । କାରଣ ମଶାମାନେ ଯେଉଁ ଜାଗାକୁ ଭଲ ପାଅନ୍ତି କେବଳ ସେହି ଜାଗାରେ ବହୁ ସଂଖ୍ୟାରେ ଦେଖା ଯାଅନ୍ତି । ସେମାନେ ଯେଉଁ ଜାଗାକୁ ଭଲ ନ ପାଆନ୍ତି ସେଠାରେ ରହିବାକୁ ସେମାନେ ଆଦୌ ଭଲ ପାଆନ୍ତି ନାହିଁ । ବେଳେ ବେଳେ ସେମାନେ କୌଣସି କୌଣସି ଅଞ୍ଚଳରେ ରହିବା ପାଇଁ ଆଗ୍ରହ ଦେଖାନ୍ତି ନାହିଁ । ସେହି ସବୁ ଅଞ୍ଚଳର ଜଳଜାତ ତରୁଲତା କୌଣସି ନା କୌଣସି କାରଣରୁ ସେମାନଙ୍କ ପ୍ରତି ପ୍ରତିବନ୍ଧକ ହୋଇଥାଏ । ଏହି ତରୁଲତା ଲଗାଯିବା

ଦ୍ୱାରା କେତେକ ଜାତୀୟ ମଶାମାନେ ସେଠାରେ ପଶି ପାରନ୍ତି ନାହିଁ । କିନ୍ତୁ ଯେଉଁ ମଶାମାନେ ମେଲେରିଆ ବହନ କରନ୍ତି ଓ ହଳଦିଆ ଜ୍ୱର କିମ୍ବା ଅନ୍ୟାନ୍ୟ ଭୀଷଣ ରୋଗର ଜୀବାଣୁ ବହନ କରନ୍ତି ସେମାନଙ୍କୁ ବାଧା ଦେବା ଉଦ୍ଦେଶ୍ୟରେ ଏହି ତରୁ ଲତା ବିଶେଷ କାମ ଦେଖାଏ ନାହିଁ । ରୋଗ ବହନ ନ କରୁଥିବା ମଶା ମଧ୍ୟ ଖୁବ୍ କ୍ଷତିକାରକ । ସୁଦୂର ହିମାବୃତ୍ତ ଅଞ୍ଚଳର ଅଧିବାସୀମାନେ କେତେକ ଜାଗାରେ ଉଷ୍ଣ ମଧୁର ଗ୍ରୀଷ୍ମଋତୁ ଅପେକ୍ଷା ସୂର୍ଯ୍ୟ କିରଣ ଶୂନ୍ୟ ଶୀତ ଋତୁକୁ ବିଶେଷ ଆଦର କରନ୍ତି, କାରଣ ସେଠାର ଗ୍ରୀଷ୍ମ କାଳୀନ ଆନନ୍ଦ ଅସଂଖ୍ୟ ମଶାମାନଙ୍କ ଉପଦ୍ରବରେ ନିରାନନ୍ଦରେ ପରିଣତ ହୁଏ ।

ବହୁ ଦିନରୁ ଜଣା ଯାଇଛି ଯେ ମଶାମାନେ କେତେକ କ୍ଷୁଦ୍ର ଜଳାଶୟରେ କେବଳ ଡିମ୍ବ ଦିଅନ୍ତି । ଅନ୍ୟ ସବୁ ଜଳାଶୟରେ ଡିମ୍ବ ଦିଅନ୍ତି ନାହିଁ । ଏହି ଅଳ୍ପ କେତେକ ବର୍ଷ ପୂର୍ବେ କେବଳ ମଶାମାନଙ୍କର ଏହି ପ୍ରସବ ସ୍ଥଳ ନିର୍ବାଚନ ପ୍ରବୃତ୍ତିର ଗୂଢ଼ତତ୍ତ୍ୱ ଆବିଷ୍କାର କରିବା ପାଇଁ ଚେଷ୍ଟା କରାଗଲା । ଏବେ ମୁଦ୍ଧା ଏହି ପ୍ରହେଳିକା ପୂର୍ଣ୍ଣମାତ୍ରାରେ ସିଦ୍ଧାନ୍ତ କରାଯାଇ ନାହିଁ । ଦଳଜାତ ତରୁଲତାମାନଙ୍କ ଉପରି ଭାଗ ଏପରିଭାବେ ଆବୃତ୍ତ କରି ରଖିବାକୁ ହେବ ଯଦ୍ଦ୍ୱାରା ମଶା ଛୁଆମାନେ ପବନ ପାଇ ପାରିବେ ନାହିଁ । ଏହା ଫଳରେ ମଶା ଉତ୍ପତ୍ତି ରୋଧ କରାଯାଇ ପାରିବ । ଅଥବା ତୃଣ ଲତାମାନେ ଏପରି ଅତି ସୂକ୍ଷ୍ମଭାବେ ଛନ୍ଦିବା ଜାଲ୍ ରୂପେ ରହିବାକୁ ହେବ ଯଦ୍ଦ୍ୱାରା ମଶା ଛୁଆମାନେ ସେଥିରେ ପ୍ରବେଶ କରିବା ମାତ୍ରେ ଛନ୍ଦି ହୋଇ ମରିଯିବେ । ଏପରି କେତେକ ତରୁଲତା ଅଛନ୍ତି । ଯେଉଁମାନେ ପ୍ରକୃତରେ ମଶାମାନଙ୍କ ଟାଣିଧରି ଗିଳି ପକାନ୍ତି ସାଧାରଣ ଭାବରେ ଜଣାଶୁଣା କୀଟଭକ୍ଷକ ଲତା ସମ୍ଭବତଃ ଅଟ୍ରିକାଲେରିସ (Utricalaris) ଜାତୀୟ ଲତା । ଏହି ଲତାମାନ ଅପର୍ଯ୍ୟାପ୍ତ ପରିମାଣରେ ଜଳ ଉପରିଭାଗର ଠିକ ତଳେ ଭାସି

ରହନ୍ତି । ଏହି ଲତାଗୁଡ଼ିକ ଦେହରେ ଗୋଟିଏ ଗୋଟିଏ ମୁଣି ଥାଏ ଶିକାର ଅପେକ୍ଷା କରିବା ବେଳେ ଏହି ମୁଣିଗୁଡ଼ିକ ଅତିରିକ୍ତ ସଙ୍କୁଚିତ ହୋଇଯାଏ । କୀଟାଣୁ, ଡିମ୍ବ ଓ ଛୁଆମାନ ଏହି ମୁଣି ମୁଖ ନିକଟକୁ ଆସିବା ଯଣି ମୁଣିର ପେଟ ସମ୍ପ୍ରସାରିତ ହୋଇଯାଏ । ଫଳରେ ଜଳ ସହିତ କୀଟାଣୁ, ଛୁଆ ପ୍ରଭୃତି ସେଥି ଭିତରକୁ ଚାଲି ଯାଆନ୍ତି । ଏହି ମୁଣିମାନ ଏପରି ଭାବେ ପ୍ରସ୍ତୁତ ହୋଇଥାଏ ଯେ ଭିତରକୁ କୌଣସି ଜନ୍ତୁ ପ୍ରବେଶ କଲାମାତ୍ରେ ଆଉ ବାହାରକୁ ଆସିପାରେ ନାହିଁ । ଏହି ଲତାମାନ ପ୍ରାୟ ୬ ଫୁଟ ପର୍ଯ୍ୟନ୍ତ ଦୀର୍ଘ ଦେଖାଯାନ୍ତି । ପରୀକ୍ଷା ଦ୍ୱାରା ଜଣା ଯାଇଛି ଯେ ଏପରି ଗୋଟାଏ ଲତା ତାହା ପେଟ ଭିତରକୁ ପ୍ରାୟ ୧,୫୦,୦୦୦ କ୍ଷୁଦ୍ର ଜୀବାଣୁ ଟାଣି ନେଇ ପାରେ ।

କାରଣ୍ଟ୍ରୀଓ୍ୱାଲ ବଣ୍ଟୁ ବିଦ୍ୟାଳୟର ମିଃ ଆର, 'ମାଥୁ ସ୍ମାନ' ବୈଜ୍ଞାନିକ ପ୍ରଣାଳୀରେ ପରୀକ୍ଷାଦ୍ୱାରା ଦେଖାଇଛନ୍ତି ଯେ ଏହି ଲତା ନିକଟରେ ଥିବା ପ୍ରାୟ ସବୁ ଜୀବାଣୁ ଏହି ଲତା ଜାଲରେ ପଡ଼ିଯାଆନ୍ତି ଏହି 'ବ୍ଲାଡ୍ରାରଓ୍ୱାରଟ' (Bladdrwerts) ଲତାମାନ ଦେଖିବାକୁ ବଡ଼ ସୁନ୍ଦର ଏବଂ ଏହା ଅତି ଅଯତ୍ନରେ ସୁଦ୍ଧା ସୁନ୍ଦର ଭାବେ ବଢ଼ି ପାରେ ଏବଂ ମାଛ ଥିବା ପୋଖରୀମାନଙ୍କୁ ମନୋମୁଗ୍ଧକର କରେ । କ୍ଷୁଦ୍ର ଜଳାଶୟ, ପୋଖରୀ ଛୋଟ ହ୍ରଦ ପ୍ରଭୃତିରେ ଏହି ଲତା ଲଗା ଯାଇପାରେ । ଛୋଟ ପିଲା ଓ ପ୍ରୌଢ଼ମାନଙ୍କୁ ପ୍ରାଣୀ ବିଜ୍ଞାନ ଶିକ୍ଷା ଦେବାବେଳେ ଏହି ଲତାମାନଙ୍କ ଜୀବାଣୁ ଆକର୍ଷଣୀ କ୍ରିୟା ଶିକ୍ଷା ଦେବା ଉଚିତ ।

ମଶାମାନଙ୍କ ସହିତ ଶତ୍ରୁତା ଥିବା ଆଉ ଗୋଟାଏ ଜାତୀୟ ଲତା ଅଛି । ଏହି ଲତାମାନ ଜଳର ଉପରି ଭାଗରେ ଏତେ ଗହଳ ଭାବେ ବ୍ୟାପି ରହନ୍ତି ଯେ ସେମାନଙ୍କ ନିମ୍ନଦେଶରେ ଥିବା ସମସ୍ତ ଜୀବାଣୁ ନିଃଶ୍ୱାସ ପ୍ରଶ୍ୱାସ ଅଭାବରେ ଶ୍ୱାସରୁଦ୍ଧ ହୋଇ ମରି ଯାଆନ୍ତି ।

ଏହି ଲତାମାନ ମାଛ ମଶାମାନଙ୍କୁ ଆଖପାଖ ଅଞ୍ଚଳରେ ଡିମ୍ବ ଦେବାପାଇଁ ନିରୁତ୍ସାହିତ କରନ୍ତି ବୋଲି କୁହାଯାଏ । ମାତ୍ର ଏହି ବିଶ୍ୱାସ ଅଦ୍ୟାପି ପୂର୍ଣ୍ଣରୂପେ ସିଦ୍ଧାନ୍ତ ହୋଇ ନାହିଁ । ଅନେକ ଜାତୀୟ ତୃଣ ବା ହଂସ ତୃଣ (Duckweed) ଅଛି ଯାହା ଜଳ ଉପରେ ରହି ଅନେକ କ୍ଷୁଦ୍ର କ୍ଷୁଦ୍ର କୀଟଙ୍କ ପକ୍ଷରେ ଏକପ୍ରକାର ଆଶ୍ରୟ ସ୍ଥଳ ହୋଇଥାଏ । ଏହି କୀଟ-ମାନେ ମଶା ଡିମ୍ବ, ଛୁଆ ଇତ୍ୟାଦି ଧ୍ୱଂସ କରି ଦଅନ୍ତି । ମାଲୟ ଦେଶରେ ଅଲ୍‌ଜି (algae) ନାମରେ ଏକ ପ୍ରକାର କୀଟ—ଧ୍ୱଂସକାରୀ ନୀଳ ଓ ଶାଗୁଆ ବର୍ଣ୍ଣ ବିଶିଷ୍ଟ ଲତା ଅଛି । ଏହା ଅପରିଷ୍କାର ଜଳ ଉପରେ ଜମାଟ ବାନ୍ଧି ଜୀବାଣୁ ଧ୍ୱଂସ କାର୍ଯ୍ୟରେ ସହାୟତା କରେ । ଅନୋ-ଫିଲିନ ଜୀବାଣୁର ଅଭାବ ଏହି ଲତା ଦ୍ୱାରା ହୋଇଥାଏ ।

ମଶାମାନେ ଛୁଆ ଦେବା ପାଇଁ କିପରି ସ୍ଥାନ ପସନ୍ଦ କରନ୍ତି ସେ ସଂକ୍ରାନ୍ତରେ ସବୁ ସମସ୍ୟା ଆଲୋଚନା କରିବା ବେଳେ ସେଠାରେ ଜଳର ପାରିପାର୍ଶ୍ୱିକ ଅବସ୍ଥିତିକୁ ଆଲୋଚନାର ମୂଳ ଭିତ୍ତି ରୂପେ ଧରିବାକୁ ହେବ । ଜଳ ସବୁଠାରେ ରହିଛି ଏବଂ ପ୍ରଚୁର ପରିମାଣରେ ସବୁଠାରେ ଦେଖାଯାଏ ଏବଂ ଜୀବନ ଧାରଣର ପ୍ରତ୍ୟେକ କ୍ରିୟା ପାଇଁ ଏହା ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଅବଶ୍ୟକୀୟ ଜିନିଷ । ଅଥଚ ମଶା ଉତ୍ପତ୍ତି ଏବଂ ମଶାମାନଙ୍କ ଜୀବନ ତତ୍ତ୍ୱ ଆଲୋଚନା କରିବାପାଇଁ ଜଳ ଗୋଟାଏ ଜଟିଳ ସମସ୍ୟା ହୋଇ ପଡ଼େ । ଆମ୍ଭେମାନେ ମଶାମାନଙ୍କ ସମ୍ପର୍କରେ ଗୋଟାଏ ଗୁରୁତର ତଥା ଗୋପନ ରହସ୍ୟ ଭେଦ କରି ପାରିବା ଏବଂ ଫଳରେ ସେମାନଙ୍କଦ୍ୱାରା ଜୀବନ କିପରି ଅସହ୍ୟ ହୋଇ ପଡ଼େ ତାର ସବିଶେଷ ଶିକ୍ଷା ଦିନେ ନିଶ୍ଚୟ ପାଇ ପାରିବା ।



# ୧୭ ମେଲେରିଆ ପ୍ରତିରୋଧ କରିବାର ଅଞ୍ଚଳ

ମଶା ଭଳି ଗୋଟାଏ କ୍ଷୁଦ୍ର ଜୀବ କିପରି ବ୍ୟାପକ କ୍ଷତି ଘଟାଉଛି ତାହା ଭାବିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ ।

ରକ୍ତ ଶୋଷଣ ପାଇଁ ଅନ୍ୱେଷଣ କରିବାବେଳେ ମଶାକୁ ଅନେକ ବିପଦ ଭିତରେ ଦେଇ ଯିବାକୁ ପଡ଼େ । ଏହି ଅବସ୍ଥାରେ ବେଳେ ବେଳେ ତାର ମୃତ୍ୟୁ ଘଟିଥାଏ । ମନୁଷ୍ୟ ନିଜର ଅସାବଧାନତା ବଶତଃ ମଶାର କବଳରେ ପଡ଼େ । ଫଳରେ ବିପଦ ବହୁଗୁଣରେ ବଢ଼ିଯାଏ । ସାର୍ ରନାଲ୍ଡ ରସ୍ ସାହେବ ଜଣେ ପ୍ରତିଭାବାନ୍ ଲୋକ ସେ ଗଣିତ ଶାସ୍ତ୍ର ଆଲୋଚନା କରୁଥିଲେ । ମଶାମାନେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ କିପରି ଯାଆନ୍ତି ସେ ସମ୍ପର୍କରେ ସେ ତଳ ଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି:—

୧ । ମଶା ତେଲ କେବଳ ଯେ ପରୀକ୍ଷା ସ୍ଥଳରେ ହ୍ରାସ କରାଯାଇ ପାରେ ତାହା ନୁହେ । ସେହି ସ୍ଥଳର ଦୂରକୁ ମଧ୍ୟ ପ୍ରାୟ ଆଉ ସେତିକି ସୀମା ପର୍ଯ୍ୟନ୍ତ ତାର ଗତାଗତ ହ୍ରାସ କରାଯାଇ ପାରିବ ।

୨ । ପରୀକ୍ଷା ଦୃଷ୍ଟିରୁ ଯଦି ନିୟନ୍ତ୍ରିତ ଅଞ୍ଚଳ ଖୁବ୍ ବିସ୍ତୃତ ହୋଇଥାଏ ତାହା ହେଲେ ସେହି ଅଞ୍ଚଳରେ କେନ୍ଦ୍ର ପର୍ଯ୍ୟନ୍ତ ଗତାଗତର ସୀମା ସେତେ ଗୁରୁତର ନୁହେଁ ।

ରସ୍ ସାହେବଙ୍କ ଏହି ନିୟମମାନ ବାସ୍ତବ ପରୀକ୍ଷା ଦ୍ୱାରା ସିଦ୍ଧ ହୋଇଛି । ବର୍ତ୍ତମାନ ସାଧାରଣତଃ ସ୍ଥିର ହୋଇଛି ଯେ ନିୟନ୍ତ୍ରଣର ପ୍ରଧାନ ଅଂଶ ହେଉଛି ମଶାର ବାସସ୍ଥଳ ଓ ଉତ୍ପତ୍ତି ସ୍ଥଳ ମଧ୍ୟରେ ଥିବା ବ୍ୟବଧାନ, ଏହାକୁ "ବ୍ୟାପ୍ତିର ଦୂରତା" କୁହାଯାଏ ।

ପୂର୍ବ ଅଞ୍ଚଳରେ ଅର୍ଦ୍ଧମାଇଲ ପରିମିତ ବ୍ୟାସାର୍ଦ୍ଧ ମେଲେରିଆ ନିର୍ମୂଳ କରିବା ପାଇଁ ଯଥେଷ୍ଟ ବିସ୍ତୃତ ବୋଲି ଧରା ଯାଇଛି । ମାତ୍ର ଅନ୍ୟାନ୍ୟ ଅଞ୍ଚଳର ଅନ୍ୟ ଜାତୀୟ କୀଟଙ୍କ ପାଇଁ ଏହି ବ୍ୟାସାର୍ଦ୍ଧକୁ ବଢ଼ାଇବା ଆବଶ୍ୟକ ହୋଇପାରେ ।



# ୧୮ ମେଲେରିଆ ଚିକିତ୍ସା ଓ ଉପଶମ

## କ—ଚିକିତ୍ସା

ଖ୍ରୀଷ୍ଟାବ୍ଦ ୧୬୩୮ ମସିହାରେ ପେରୁ ବଡ଼ଲାଟଙ୍କ ପତ୍ନୀ କାଂଉଣ୍ଟେସ୍ ଅଫ୍ ସିଂକୋନା ଯେତେବେଳେ 'ଲିମସ୍' ଠାରେ ତ୍ରିଦିନାତ୍ମକ ଜ୍ୱର ଦ୍ୱାରା ଆକ୍ରାନ୍ତ ହେଲେ ସେତେବେଳେ ତାଙ୍କୁ କୋଇନା ଛେଲି ବ୍ୟବହାର ଦ୍ୱାରା ଜ୍ୱରରୁ ମୁକ୍ତ କରାଗଲା । ଏହି ଛେଲିର ବ୍ୟବହାର ବହୁଦିନୁ ଦକ୍ଷିଣ ଅଫ୍ରିକାର ଆଦମ ଅଧିବାସୀ-ମାନେ ଜାଣିଥିଲେ । ଯେତେବେଳେ ଫରାସି ସମ୍ରାଟ ଚତୁର୍ଦ୍ଦଶ ଲୁଇ ଜ୍ୱରାକ୍ରାନ୍ତ ହେଲେ ଏହି ଛେଲିର ଉପକାର ଜାଣିଥିବା ଜେସୁଇଟ ଧର୍ମଯାଜକମାନେ ଫରାସୀ ରାଜ ବୈଦ୍ୟ କାର୍ଡିନେଲ୍ ଲ୍ୟୁଗୋଙ୍କ ନିକଟକୁ ଏହି ଛେଲି ପଠାଇଥିଲେ । ଏହାପରେ କ୍ରମେ କ୍ରମେ ମେଲେରିଆର ବଶିଷ୍ଟ ଔଷଧରୂପେ ଏହି ଛେଲି ବ୍ୟବହୃତ ହେଲା । ଉକ୍ତ କାଂଉଣ୍ଟେସ୍ ଓ ତାଙ୍କ ରାଜ ଚିକିତ୍ସକ ସ୍ପେନ ଦେଶକୁ ଏହି ଛେଲି ମଗାଇ ଥିଲେ ଏବଂ ପରେ ୟୁରୋପ ମହାଦେଶର ଅନ୍ୟାନ୍ୟ ଅଞ୍ଚଳରେ ଏହାର ପ୍ରଚଳନ ବ୍ୟାପିବାକୁ ଲାଗିଲା । ଏହି ଚିକିତ୍ସା ବିଭିନ୍ନ ନାମରେ ଖ୍ୟାତ । ଏହାକୁ କାଂଉଣ୍ଟେସ୍ ଚୂର୍ଣ୍ଣ, ଜେସୁଇଟସ୍ ଚୂର୍ଣ୍ଣ, କାର୍ଡିନେଲ୍ ଛେଲି ବୋଲି କୁହାଯାଏ । ଖ୍ରୀଷ୍ଟାବ୍ଦ ୧୮୨୦ ମସିହା ପର୍ଯ୍ୟନ୍ତ ଅଲ୍‌କାଲଇଡ଼ କୋଇନାର ବ୍ୟବହାର ପ୍ରଚଳିତ

ନଥିଲା । ଉକ୍ତ ମସିହାରେ ଦୁଇଜଣ ଫରାସୀ ରସାୟନଜ୍ଞ 'ପେଲିଟିଏର୍' ଓ 'ଗେଟେଭେନ୍ଟୁ' ଛେଲ୍ ଦେହରୁ ଅଲ୍‌କାଲଏଡ୍ କୋଇନା ବାହାର କରିଥିଲେ । କାଂଉଣ୍ଟେସ୍‌ଙ୍କ ନାମାନୁସାରେ ଏହାକୁ ଖ୍ରୀଷ୍ଟାବ୍ଦ ୧୭୪୩ ମସିହାରେ 'ଲିନିଏସ୍ ସିଂକୋନା' ନାମରେ ନାମିତ କରାଗଲା । ୧୮୦୭ ମସିହାରେ ସର୍ବ ପ୍ରଥମ ମେଲେରିଆ ଚିକିତ୍ସାରେ କୋଇନା ସାଲଫାଟ ଭାରତରେ ପ୍ରଚଳିତ ହେଲା । ଡାକ୍ତର 'ଟେହେଗ୍' ମେଲେରିଆ ଓ ଅତିସାର ରୋଗ ଚିକିତ୍ସା ସଂକ୍ରାନ୍ତରେ ଲେଖିଥିବା ବହି ଯୋଗୁଁ ବାୟୁମଣ୍ଡଳ ସୃଷ୍ଟିକଲା ତାରି ଫଳରେ କଲିକତା ମେଡ଼ିକେଲ୍ ବୋର୍ଡ ସରକାରୀ ସ୍ତରରେ କୋଇନା ଔଷଧର ଗବେଷଣା କଲେ ଏବଂ ଏହି ବୋର୍ଡ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶ ଅନୁଯାୟୀ ଏହି ଔଷଧ ମେଲେରିଆ ଚିକିତ୍ସା ପାଇଁ ନିୟମବଦ୍ଧ ଭାବେ ବ୍ୟବହୃତ ହେବାକୁ ଲାଗିଲା ।

୫ । ଖ୍ରୀଷ୍ଟାବ୍ଦ ୧୮୬୦ ମସିହାରେ 'କ୍ଲେମେଣ୍ଟ ମାର୍କହାମ୍' ନାମକ ଜଣେ ଇଉରୋପୀୟ ଦକ୍ଷିଣ ଆମେରିକାରୁ କୋଇନା ମଞ୍ଜି ମଗାଇ ଭାରତ ଓ ସିଂହଳ ଦ୍ୱୀପରେ କୋଇନା ଚାଷ ଆରମ୍ଭ କରିଥିଲେ । କିଛିକାଳ ଏହି ବ୍ୟବସାୟ ଖୁବ୍ ଲାଭଜନକ ହେଲା । ମାତ୍ର ପରେ ୧୮୮୦ ମସିହା ଠାରୁ ୧୮୯୦ ମସିହା ମଧ୍ୟରେ ଅତିରିକ୍ତ ଉତ୍ପାଦନ ହେତୁ ଏହାର ମୂଲ୍ୟ କମିଗଲା ଏବଂ ଫଳରେ ଏହି ବ୍ୟବସାୟ ଲୋପ ପାଇଗଲା । ଭାରତରେ ସିଂକୋନା ଚାଷ ପ୍ରବର୍ତ୍ତିତ ହେବା ଆଗରୁ 'ଜାଭା'ରେ ଏହି ଚାଷ ଆରମ୍ଭ ହୋଇ ସାରିଥିଲା । କିନ୍ତୁ 'ଜାଭା'ର ଚତୁର ବ୍ୟବସାୟୀମାନେ ଏହି ବ୍ୟବସାୟକୁ ଧ୍ୱଂସ ମୁଖରୁ ରକ୍ଷା କରିପାରି ଥିଲେ । ଭାରତରେ ଏହା ସମ୍ଭବ ହୋଇ ପାରି ନଥିଲା । ବର୍ତ୍ତମାନ ପୃଥିବୀର ଶତକଡ଼ା ପ୍ରାୟ ୯୭ ଭାଗ କୋଇନା କେବଳ ଜାଭା ଯୋଗାଇ ପାରୁଛନ୍ତି । ଭାରତରେ ସିଂକୋନା ଉତ୍ପାଦନ କରିବା ସମ୍ପର୍କରେ ଏବେ ଭାରତ ସରକାରଙ୍କ ନିର୍ଦ୍ଦେଶରେ

ଅନୁସନ୍ଧାନ ଚାଲିଛି । ସିଂକୋନା ବ୍ୟବସାୟର ପୁନରୁତ୍ଥାନ କରି ଭାରତକୁ ଏ ଦିଗରେ ଆତ୍ମନିର୍ଭର ଶୀଳ କରିବା ପାଇଁ ଭାରତ ସରକାର ତତ୍ପର ।

ତଳ ଲିଖିତ ଏହି କେତେକ ଔଷଧ ମେଲେରିଆ ନିବାରଣ ପାଇଁ ଆଜିକାଲି ବ୍ୟବହୃତ ହେଉଛି:—

୧ । କ୍ୟୁନାଇନ ।

୨ । ଆଟିବ୍ରିନ୍ ଓ ମେପାକ୍ରିନ୍ (Atebrine and Mepacrine.)

୩ । ପାଲ୍‌ମକ୍ୟୁନ୍ ଓ ପାମାକ୍ୟୁନ୍ (Palsmoquin and pama kuin.)

**କ୍ୟୁନାଇନ**—ବର୍ତ୍ତମାନ ମେଲେରିଆ ନିବାରଣ ପାଇଁ ଏହା ଏକମାତ୍ର ଔଷଧି ରୂପେ ଖ୍ୟାତ । ମେଲେରିଆ-ଜୀବାଣୁ ଧ୍ୱଂସ କରୁଥିବା କ୍ୟୁନାଇନ (ଛବି ୬୮ ଦ୍ରଷ୍ଟବ୍ୟ) ଆହାର ପରେ ବ୍ୟବହାର କରିବାକୁ ହେବ । ବର୍ଦ୍ଧିତ ଓ ଧାରାବାହିକ ଚିକିତ୍ସା ପାଇଁ ଜାତି ସଂଘଙ୍କ ଧାର୍ଯ୍ୟ ବ୍ୟବସ୍ଥା ଅନୁଯାୟୀ ପ୍ରତ୍ୟହ ୧୫ ଠାରୁ ୨୦ ଗ୍ରେନ୍ କୋଇନା ୫।୭ ଦିନ ବ୍ୟବହାର କରିବାକୁ ହେବ । କୋଇନା ସବୁବେଳେ ମୁଖ ଦ୍ୱାରା ବ୍ୟବହାର କରିବା ଉଚିତ । ବର୍ତ୍ତମାନ୍ ଜଣାଯାଏ ଯେ ମୁଖ ଦ୍ୱାରା ସେବନ କରାଯାଉଥିବା କୁଇନାଇନ ଠାରୁ ଇଞ୍ଜେକ୍‌ସନ୍‌ଦ୍ୱାରା ବ୍ୟବହାର କରାଯାଉଥିବା କୁଇନାଇନ୍ କୌଣସି ଗୁଣରେ ଉତ୍କୃଷ୍ଟତର କିମ୍ବା ଅଧିକ ଫଳପ୍ରଦ ନୁହେଁ ।

ମୁଖଦ୍ୱାରା କ୍ୟୁନାଇନ୍ ସେବନ କୌଣସି ବିଶେଷ କାରଣରୁ ସମ୍ଭବ ହୋଇ ନପାରିଲେ କେବଳ ଇଞ୍ଜେକ୍‌ସନ୍ ଦ୍ୱାରା ତାହାକୁ ବ୍ୟବହାର କରାଯାଇ ପାରେ ।

ଆଧୁନିକ ସମୟରେ ମେଲେରିଆ ଚିକିତ୍ସା ନିମ୍ନଲିଖିତ ବିଧାନ ଅନୁଯାୟୀ କରାଯାଏ ।

| ଦିନ | ଔଷଧ | ପରିମାଣ |
|---|---|---|
| ୧—୨ | କ୍ୱୁଇନାଇନ୍ | ୧୦ ଗ୍ରେନ୍ ପ୍ରତ୍ୟହ ୩ ବାର |
| ୩—୭ | ମେପେକିନ୍ ବା ଆଟିବ୍ରିନ୍ .୧ ଗ୍ରେଇନ୍ | „ „ |
| ୮—୯ | ବିନା ଔଷଧ | |
| ୧୦—୧୫ | ପେମେ କ୍ୱୁଇନ୍ | ·୦୧ ଗ୍ରେମ୍ ଦୈନିକ ଦୁଇବାର |

**ଆଟିବ୍ରିନ ବା ମେପେକ୍ରିନ:**- Atebrine or Mapacrine ଅଟିବ୍ରିନ ଓ କ୍ୱୁଇନାଇନ୍ ଏହି ଉଭୟ ଔଷଧର କ୍ରିୟା ପ୍ରାୟ ସମାନ । ସୁତରାଂ ଅଟିବ୍ରିନ୍ ଓ କ୍ୱୁଇନାଇନ୍ ଏକାବେଳକେ ସେବା କଲେ କୌଣସି ଉପକାର ହୁଏ ନାହିଁ । ଅଟିବ୍ରିନ୍ ଖାଉଥିବା ଲୋକମାନଙ୍କ ମୂତ୍ର ହଳଦିଆ ବର୍ଣ୍ଣ ହୋଇଯାଏ ଏବଂ ଦେହର ଚର୍ମ ହଳଦିଆ ଦେଖାଯାଏ । କିନ୍ତୁ ଏହା ଅଳ୍ପଦିନ ସ୍ଥାୟୀ ଏବଂ ଔଷଧ ସେବନ ବନ୍ଦ କଲେ ଶୀଘ୍ର ଚାଲିଯାଏ ।

**'ପାମା କ୍ୱୁଇନ' ବା 'ପାସ୍‌ମା କ୍ୱୁଇନ'**. (Pamaqunie or Pasmoquine) ଏହି ଔଷଧ ସମଗ୍ର ତିନି ପ୍ରକାର ମେଲେରିଆ ଜୀବାଣୁ ଉପରେ-ଗୋଟାଏ ଧ୍ୱଂସ ମୂଳକ ପ୍ରକ୍ରିୟା ଆରମ୍ଭ କରେ । କିନ୍ତୁ ମେଲେରିଆ ଜୀବାଣୁର ଅନ୍ୟାନ୍ୟ ସ୍ଥଳରେ ଏହାର ପ୍ରଭାବ ନଥାଏ । ମେଲେରିଆ ଚିକିତ୍ସାରେ ପାସମା କ୍ୱୁଇନାଇନର ପ୍ରଧାନ କ୍ରିୟା ଜୀବାଣୁ ଧ୍ୱଂସ କିମ୍ବା ଆକ୍ରମଣରୁ ମୁକ୍ତି ନୁହେ । କେବଳ ପୁନରାକ୍ରମଣର ମାତ୍ରା କମାଇବା ପାଇଁ 'ଅଟିବ୍ରିନ୍' ସହିତ 'ପାସମା କ୍ୱୁଇନ' ମିଶାଇ ତାକୁ ଖାଇବା ଉଚିତ ନୁହେ । କାରଣ ସେଥିରେ ବିପଜ୍ଜନକ ସଙ୍କେତମାନ ଦେଖାଯାଇ ପାରେ ।

ସମସ୍ତ ପ୍ରକାର ଜ୍ୱରରେ ଗୋଟାଏ ଲବଣଯୁକ୍ତ ଝାଡ଼ା ଔଷଧ ପ୍ରଥମେ ଦେବାକୁ ହେବ । ରୋଗୀକୁ ଶଯ୍ୟାରେ ବିଶ୍ରାମ ନେବାକୁ ହେବ ଏବଂ ଜ୍ୱରର ସବୁ ସମୟରେ କୌଣସି ଗରମ ଆଚ୍ଛାଦନ ଦ୍ୱାରା ଶରୀରକୁ ଆବୃତ କରି ରଖିବାକୁ ହେବ (ଛବି ୭୦ ଦ୍ରଷ୍ଟବ୍ୟ) । ଶରୀରର ଉତ୍ତାପ ଅଧିକ ଥିବା ବେଳେ କିମ୍ବା ଝାଳ ବହୁଥିବା ବେଳେ ଆଚ୍ଛାଦନ ପୂର୍ଣ୍ଣମାତ୍ରାରେ ବାହାର କରିବା ଅନୁଚିତ । ଦୈନିକ ତିନିବାର ୧୦ ଗ୍ରେନ୍ ପରିମାଣର କୁଇନାଇନ ସେବନ କରିବା ଉଚିତ । ଦୁର୍ବଳାବସ୍ଥା ବେଳେ କୁଇନାଇନ ଦେବାରେ କିଛି କ୍ଷତି ନାହିଁ । ରୋଗ ଠିକିଏ ଜଟିଳ ହେଲେ ଜଣେ ଡାକ୍ତରଙ୍କ ପରାମର୍ଶ ନେବା ଉଚିତ ।

## ଗ—ଉପଶମ

ଚିରକାଳ ନିମିତ୍ତ ମେଲେରିଆରୁ ମୁକ୍ତି ପାଇବା ପାଇଁ ଇଚ୍ଛୁକ ବ୍ୟକ୍ତି ବିଶେଷଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇଛି ।

(କ) ଯେଉଁ ବ୍ୟକ୍ତି ବିଶେଷଙ୍କୁ ରୋଗ ପୂର୍ଣ୍ଣ ସଂକ୍ରମଣ କିମ୍ବା ଅତିରିକ୍ତ ସଂକ୍ରମଣ କରିବା ଆଶଙ୍କା ନଥାଏ:—ଏ କ୍ଷେତ୍ରରେ ରୋଗରୁ ମୁକ୍ତି ପାଇବା ପାଇଁ ଚିକିତ୍ସା କରି ଦିନେ ବିଳମ୍ବ କଲେ ସୁଦ୍ଧା କୌଣସି ଆପତ୍ତି ନାହିଁ ।

(ଖ) ଯେଉଁ ବ୍ୟକ୍ତି ବିଶେଷଙ୍କୁ ରୋଗ ପୂର୍ଣ୍ଣ ସଂକ୍ରମଣ କିମ୍ବା ଅତିରିକ୍ତ ସଂକ୍ରମଣର ଆଶଙ୍କା ଥାଏ ।

୨ । ଅନେକ ଗ୍ରୀଷ୍ମ ପ୍ରଧାନ ଅଞ୍ଚଳରେ (ଯେଉଁଠାରେ କି ମେଲେରିଆ ସବୁବେଳେ ଥାଏ) ସେଠା ବାସିନ୍ଦାମାନଙ୍କ ମଧ୍ୟରୁ ପ୍ରୌଢ଼ମାନେ ଔଷଧ ପ୍ରତିକ୍ରିୟା ଫଳରେ ଅପେକ୍ଷାକୃତ କମ୍ ପୀଡ଼ିତ

ଥିବା ଭଲ ଦେଖା ଯାଆନ୍ତି କେବଳ ରୋଗର ସମସ୍ତ ପ୍ରତିକ୍ରିୟା ଶିଶୁ ଓ ଛୁଆମାନଙ୍କ ଉପରେ ପଡ଼େ ।

୩ । 'ଭେଟନାମ' ଅନ୍ତର୍ଗତ ଜେଷୀ ବିଶ୍ୱବିଦ୍ୟାଳୟ ଔଷଧ ବିଭାଗୀୟ ପ୍ରଫେସର 'କ୍ୟୁସି ଏମ୍' କହନ୍ତି ଯେ ଯେଉଁ ରୋଗୀମାନେ ଅଟପ ଅପେ କୌଣସି ଔଷଧ ବ୍ୟବହାର ନକରି ଭଲ ହୁଅନ୍ତି ସେମାନେ ଅପେକ୍ଷାକୃତ ରୋଗରୁ ମୁକ୍ତି ପାଆନ୍ତି । କିନ୍ତୁ ଯେଉଁ ରୋଗୀମାନଙ୍କ ଆକ୍ରମଣ କ୍ୟୁନାଇନ ଦ୍ୱାରା ଅଳ୍ପ ସମୟ ମଧ୍ୟରେ ପ୍ରତିରୋଧ କରାଯାଏ ସେମାନେ ସେତେ ଭୁର ରୋଗରୁ ମୁକ୍ତି ପାଆନ୍ତି ନାହିଁ ।

୪ । 'ସ୍ୱାର୍କୀ' ଓ ମେକ୍ ଫି ଦୁଇଜଣ ବିଶେଷଜ୍ଞ ସିଦ୍ଧାନ୍ତ କରିଛନ୍ତି ଯେ ଯଦିଓ କୋଇନା ପ୍ରାୟ ଏକ ସପ୍ତାହ କେବଳ ଦିଆ ଯାଏ 'ଭ୍ୟାଭକ୍ସ' ସଂକ୍ରମଣରୁ ଆକ୍ରମଣ କୌଣସି ମତେ ବନ୍ଦ ହୁଏ ନାହିଁ । ମାତ୍ର ଯେତେବେଳେ ୨ ଠାରୁ ୮ ସପ୍ତାହ ପର୍ଯ୍ୟନ୍ତ କ୍ରମାଗତ ଦିଅହୁଏ ସେତେବେଳେ ୬ ଠାରୁ ୧୨ ସପ୍ତାହ ପର୍ଯ୍ୟନ୍ତ ଆକ୍ରମଣର କୌଣସି ଲକ୍ଷଣ ଅବସ୍ଥା ଦେଖାଯାଏ ନାହିଁ ।

୫ । ଡାକ୍ତର ଫ୍ଲେଚର୍ କହନ୍ତି ଯଦି ରୋଗ ସଂକ୍ରମଣ ଅବସ୍ଥାରେ କ୍ରମାଗତ ଅଳ୍ପ ମାତ୍ରାରେ କୁଇନାଇନ ଦିଆହୁଏ ତ, ହାହେଲେ ରୋଗୀକୁ ରୋଗ ଆକ୍ରମଣ ଆଶଙ୍କା ଆଦୌ ନଥାଏ । ବିଶେଷତଃ ଏତିକିବେଳେ ପୁନଃ ପୁନଃ ଇଞ୍ଜେକସନ୍ ଦେଲେ ଶରୀରକୁ ଏପରି ଗୋଟାଏ ଶକ୍ତି ଆସିଯାଏ ଯାହାଦ୍ୱାରା ରୋଗ ଆକ୍ରମଣର ଆଶଙ୍କା ଦୂର ହୋଇଥାଏ ।

ସଂକ୍ଷେପରେ ଭାବେ ରୋଗ ଆକ୍ରମଣ କରିବା ଆଶଙ୍କା ଦୂରହେବା ପରେ କ୍ୟୁନାଇନ ଦ୍ୱାରା ପ୍ରୋଫିଲେକ୍‌ସିର କ୍ରମାଗତ ବ୍ୟବହାର

Fig. 75

**FIGURE 4**





**FIGURE 5**

Fig 45

Fig. 73



FIGURE
2



FIGURE
3

Fig. 74

କରିବା ପାଇଁ ୧୯୩୫ ମସିହାରେ ଜାତିସଂଘ ପକ୍ଷରୁ ମେଲେରିଆ କମିସନ୍ ବିଶେଷ ଜୋର ସହକାରେ କହୁଛନ୍ତି ।

୬ । ଯେଉଁମାନଙ୍କର ଅଳ୍ପକାଳ ପାଇଁ ଘନ ଘନ ରୋଗ ସଂକ୍ରମଣ ଓ ଅତିରିକ୍ତ ସଂକ୍ରମଣର ଆଶଙ୍କା ଅଛି ସେମାନଙ୍କୁ ଯଥା ଶୀଘ୍ର ଏପରି ଚିକିତ୍ସା ଦେବାକୁ ହେବ ଯଦ୍ଵାରା ରୋଗ ଆଉ ବଢ଼ିପାରିବ ନାହିଁ ।

୭ । ଯେଉଁ ଲୋକ ମେଲେରିଆ ଆକ୍ରମଣରେ ପୀଡ଼ିତ ହୁଏ । ଉପାର୍ଜନ କରିବା ପାଇଁ ସେ ଅକ୍ଷମ ହୋଇ ପଡ଼େ । କାରଣ ସେ ଅକର୍ମଣ୍ୟ ହୋଇ ଯାଏ ଏବଂ ମେଲେରିଆ ଜନିତ ଦୁର୍ବଳତାହେତୁ କୌଣସି କାର୍ଯ୍ୟ କରିପାରେ ନାହିଁ । ଫଳରେ ତାର ସମସ୍ତ ପରିବାର ଆହାର ଅଭାବରେ କଷ୍ଟଭୋଗ କରନ୍ତି, (ଛବି ୭୨), ତା ସ୍ତ୍ରୀ ପଇସା ଅଭାବରେ ଔଷଧ ସକାଶେ ଗହଣା ଇତ୍ୟାଦି ବିକ୍ରୟ କରୁଛି । ମାତ୍ର ଜଣେ ଚତୁର ଲୋକ ତାକୁ ସେଥିରୁ ନିବୃତ୍ତାଇ ଜଣେ ଡାକ୍ତର ଡକାଇ ଆଣିଲେ । (ଛବି ୭୩ ଦ୍ରଷ୍ଟବ୍ୟ) ଡାକ୍ତର ରୋଗୀ ନିକଟକୁ ଯାଇ କୁଇନାଇନ ଖାଇବାକୁ ଦେଲେ । (ଛବି ୭୪) ରୋଗୀ ରୋଗ ମୁକ୍ତ ହେଲା । ତାର ସ୍ତ୍ରୀ ଓ ପିଲାମାନେ ସୁଖୀ ହେଲେ । (ଛବି ୭୫) ଉପରୋକ୍ତ ମତେ ଦେଖାଯାଏ ଯେ କୁଇନାଇନ ମେଲେରିଆର ଏକମାତ୍ର ମହୌଷଧ । ଡାକ୍ତରଙ୍କ ନିକଟରେ ଡାକ ଘରେ ଅଥବା ଆପଣା ଗ୍ରାମରେ କୁଇନାଇନ ମିଳି ପାରିବ । (ଛବି ୭୨ ଓ ୭୭) ମେଲେରିଆ ପୀଡ଼ିତ ରୋଗୀ କୁଇନାଇନ ଖାଇବା ପାଇଁ ମନା କରିବାରୁ ତାର ଅକାଳ ମୃତ୍ୟୁହେଲା । ତାର ଶବ ଶ୍ମଶାନ ଘାଟକୁ ନିଆ ଯାଉଛି । (ଛବି ୭~ ଦ୍ରଷ୍ଟବ୍ୟ)

## ୧୯ ଗାଁ ଗହଳରେ ସମାଜ ସେବକମାନଙ୍କର ମାଲେରିଆ ସଂକ୍ରାନ୍ତରେ କାର୍ଯ୍ୟ

ମେଲେରିଆର ଆଶ୍ରୟ ସ୍ଥଳ ହେଉଛି କେବଳ ଗ୍ରାମ । ସୁତରାଂ ଗ୍ରାମ ମାନଙ୍କରୁ ହିଁ ମେଲେରିଅକୁ ଧ୍ୱଂସ କରିବାକୁ ହେବ । କେତେକ ଗ୍ରାମରେ ଏପରି ଅନେକ ଲୋକ ଅଛନ୍ତି ଯେଉଁମାନଙ୍କୁ ଏହି ରୋଗ ଆକ୍ରମଣ କଲେ ସୁଦ୍ଧା ରୋଗ ଉତ୍କଟ ଅବସ୍ଥାକୁ ନ ଆସିବା ପର୍ଯ୍ୟନ୍ତ ସେମାନେ ସେଥିପ୍ରତି କୌଣସି ନଜର ଦିଅନ୍ତି ନାହିଁ । ଏ କ୍ଷେତ୍ରରେ ସମାଜ ସେବକମାନଙ୍କର ପ୍ରଧାନ କର୍ତ୍ତବ୍ୟ ରହିଛି । ଜଣେ ସମାଜ ସେବକ ଏହି ପୁସ୍ତକର ସମସ୍ତ ବିଷୟ ପାଠକରିବା ଉଚିତ । ତେବେ ଯାଇ ସେ ମେଲେରିଆ କଣ ଜାଣିପାରିବେ ଏବଂ ତାର ପ୍ରତିଷେଧ, ଚିକିତ୍ସା ଏବଂ ଦୂରୀକରଣ ସମ୍ବନ୍ଧରେ ଆବଶ୍ୟକୀୟ ବିଷୟ ଜାଣିପାରିବେ । ଗ୍ରାମବାସୀମାନଙ୍କ ସହିତ ଅବାଧରେ ମିଶିବାକୁ ହେବ । ଲୋକ-ସାଧାରଣଙ୍କୁ ଏପରିଭାବେ ପ୍ରଭାବିତ କରିବାକୁ ହେବ ଏବଂ ସେମାନଙ୍କ ମନ ପରୀକ୍ଷାକରି ସେମାନଙ୍କୁ ଏପରି ଆଦର ଆଶ୍ୱାସନା କରିବାକୁ ହେବ ଯାହାଫଳରେକି ସେମାନଙ୍କ ମଧ୍ୟରୁ ସମସ୍ତ ପ୍ରକାର ବର୍ଣ୍ଣଗତ, ଧର୍ମଗତ, ସାମାଜିକ ଓ ଜାତିଗତ ଭେଦଭାବ ଦୂର ହୋଇପାରିବ । ତାହା କଲାବେଳେ କୌଣସି ପ୍ରକାର ବଳ ପ୍ରୟୋଗ କଲେ ବିଶୃଙ୍ଖଳା ଘଟେ ।

ସେବକମାନଙ୍କର ମନେ ରଖିବା ଉଚିତ ଯେ କେତେକ ଧରଣର ମେଲେରିଆ 'ସଂକ୍ରାମକ ଓ ଅନ୍ୟ କେତେକ ସଂକ୍ରାମକ ନୁହେଁ । ଏହି ମେଲେରିଆ ଜୀବାଣୁମାନ ଯେଉଁ ରୋଗୀ ଦେହରେ ଥାଆନ୍ତି ସେ ଲୋକମାନଙ୍କୁ 'ଆଶ୍ରୟଦାତା' ବା Hosts ବୋଲି କୁହା ଯାଏ । ଗୋଟାଏ ଘରେ ଜ୍ୱର ଲାଗିଲେ ସେହି ଘର ଦେହରୁ ଜ୍ୱର



**FIGURE 18**



**FIGURE 19**

Fig. 78

ଖଣ୍ଡମାନ ଓଉ ନିକଟବର୍ତ୍ତୀ ଅନ୍ୟାନ୍ୟ ସ୍ଥାନ ଉପରେ ପଡ଼େ । ସେହିପରି ଯେଉଁ ନିଆଁ ଖଣ୍ଡମାନ ଜଳ ଉପରେ ପଡ଼େ ସେଗୁଡ଼ିକ ସାଙ୍ଗେ ସାଙ୍ଗେ ଲିଭିଯାଏ । ଆଉ କେତେକ ଆର୍ଦ୍ର ଭୂମିଉପରେ ପଡ଼ିଲେ ସେଗୁଡ଼ିକ ଆସ୍ତେ ଆସ୍ତେ ମଉଳି ଯାଆନ୍ତି । କିନ୍ତୁ ଅଗ୍ନି ଖଣ୍ଡମାନ ଶୁଖିଲା ଛଣ ଉପରେ ପଡ଼ିବା ଯଣି ସେତିକ ଭୀଷଣଭାବେ ଜଳି ଉଠେ । ଠିକ୍ ସେହିପରି, ମେଲେରିଆ ଜୀବାଣୁମାନଙ୍କୁ କେତେକ ଅନୁକୂଳ ଆଶ୍ରୟ ସ୍ଥଳ ଗ୍ରହଣ କରିବାକୁ ପଡ଼େ ଏବଂ ଅନ୍ୟ କେତେକଙ୍କୁ ପ୍ରତିକୂଳ ଆଶ୍ରୟ ସ୍ଥଳରେ ରହିବାକୁ ପଡ଼େ । ଅନୁକୂଳ ଆଶ୍ରୟଦାତା କିଏ ତାହା ଜାଣିବା ଉଚିତ । ସେହି ଆଶ୍ରୟ ଦାତା—

୧ । ପିଲାମାନେ ।

୨ । ଯେଉଁମାନଙ୍କ ଦେହରେ କୌଣସି ନା କୌଣସି କାଳଣୁଗତ ରୋଗ ଥାଏ ଏବଂ ତଦ୍ଦ୍ୱାରା ସେମାନେ ଦୁର୍ବଳ ହୋଇଥାନ୍ତି ।

୩ । ଯେଉଁମାନେ ଆବଶ୍ୟକୀୟ ଖାଦ୍ୟ ଖାଇବାକୁ ପାଆନ୍ତି ନାହିଁ ।

ସମାଜ ସେବକମାନେ ଜାଣିରଖିବା ଉଚିତ ଯେ ଛୁଆପିଲା, ଦୁର୍ବଳ ଲୋକ ଓ ଆବଶ୍ୟକୀୟ ଆହାର ନ ପାଇବା ଲୋକଙ୍କୁ କେବଳ ଏହି ରୋଗ ଆକ୍ରମଣ କରିବାର ବିଶେଷ ଆଶଙ୍କା ରହିଛି । ଏହି ଗ୍ରାମ ସେବକମାନେ ରୋଗ କିପରି ଚିହ୍ନିବାକୁ ହେବ ଏବଂ ତାହା କିପରି ଭାବେ ନିବାରଣ କରିବାକୁ ହେବ ସେ ଦିଗରେ ଗ୍ରାମବାସୀମାନଙ୍କୁ ଶିକ୍ଷା ଦେବାକୁ ହେବ । ରୋଗ ସୀମାତିରିକ୍ତ ହେଲେ, ଯଦି ଆବଶ୍ୟକ ହୁଏ, ବିଶେଷଜ୍ଞ ଡାକ୍ତରମାନଙ୍କ ସାହାଯ୍ୟ ନେବାକୁ ହେବ, ବିଶେଷତଃ ବୈଜ୍ଞାନିକ ପ୍ରଣାଳୀ ଦ୍ୱାରା ସିଦ୍ଧ ହୋଇଥିବା ବ୍ୟବସ୍ଥାର ଆଶ୍ରୟ ନେବାକୁ ହେବ । ଗ୍ରାମରେ କାହାଠାରେ ମେଲେରିଆ ଅଛି ଓ କେଉଁମାନେ ସଂକ୍ରାମକ ଅବସ୍ଥାପନ୍ନ ସେ ସମସ୍ତ ଅନୁସନ୍ଧାନ ଦ୍ୱାରା

ଜାଣି ରଖିବା ଉଚିତ । ସାହାଯ୍ୟ କରିବା ତାର ଏକମାତ୍ର କାର୍ଯ୍ୟ ବୋଲି ସେହି ସମାଜ ସେବୀକୁ ଗ୍ରାମବାସୀମାନଙ୍କ ମନରେ ବିଶ୍ୱାସ ଜନ୍ମାଇବାକୁ ହେବ । ତା ନହେଲେ ଲୋକେ ତା ନିକଟରେ ରୋଗ ଲୁଚାଇ ପାରନ୍ତି । ତାଙ୍କୁ ଆଖପାଖ ନେତୃସ୍ଥାନୀୟ ପ୍ରତିବେଶୀମାନଙ୍କର ବିଶ୍ୱାସ ଭାଜନ ହେବାକୁ ହେବ । ତାହାହେଲେ ସେମାନଙ୍କ ସହଯୋଗ ଲାଭ କରିବା ସହଜ ହେବ । ସେମାନଙ୍କ ସାହାଯ୍ୟରେ ତାଙ୍କୁ ପ୍ରତ୍ୟେକ ଘରର ତାଲିକା ପ୍ରସ୍ତୁତ କରିବାକୁ ହେବ । ପ୍ରତ୍ୟେକ ଘର ସକାଶେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର କାର୍ଡ ରଖିବାକୁ ହେବ । ଉକ୍ତ କାର୍ଡରେ ବିଭିନ୍ନ ବିଷୟ ରହିବା ସକାଶେ ଘରମାନ ପ୍ରସ୍ତୁତ କରିବାକୁ ହେବ । କାର୍ଡରେ ଥିବା ପ୍ରତ୍ୟେକ ଘରେ ପୂର୍ଣ୍ଣ ହିସାବ, ଘରର ଅଧିବାସୀଙ୍କ ସଂଖ୍ୟା, ସ୍ତ୍ରୀ ବା ପୁରୁଷ, ଆନୁମାନିକ ବୟସ, କାର୍ଯ୍ୟ, ଜାତି ବା ବର୍ଣ୍ଣ ଦରଜ କରିବାକୁ ହେବ । ପରିଶେଷରେ ଗୋଟାଏ ବଡ଼ସ୍ତମ୍ଭ ରଖିବାକୁ ହେବ । ଏଥିରେ କାହାର ମେଲେରିଆ ଅଛି ନା ନାହିଁ ତାହା, ଅଥବା ଅନ୍ୟାନ୍ୟ ଆବଶ୍ୟକୀୟ ମନ୍ତବ୍ୟ ଲେଖାଯାଇ ପାରିବ । ଏପରି ଭାବେ ହୁଏତ ସେ ଗ୍ରାମବାସୀମାନଙ୍କ ବିଶ୍ୱାସ ଭାଜନ ହୋଇ ସମସ୍ତ ବିଷୟ ବୁଝି ପାରିବେ । ହୁଏତ ସମସ୍ତ ହିସାବ ସଂଗ୍ରହ କରିବା ପରେ ତାଙ୍କୁ ନିକଟସ୍ଥ ସହରରୁ ଜଣେ ଡାକ୍ତର ଆଣିବା ପାଇଁ ଚେଷ୍ଟା କରିବାକୁ ପଡ଼ିପାରେ ଏବଂ ସେହି ଡାକ୍ତରଙ୍କ ପରାମର୍ଶ ନେଇ କାର୍ଡରେ ଥିବା ଶେଷ ଘରଟିର ସମସ୍ତ ବିଷୟ ଲିପିବଦ୍ଧ କରିବାକୁ ପଡ଼ିପାରେ । କାର୍ଡ ଦ୍ୱାରା ହିସାବ ସଂଗ୍ରହ ହେବା ପରେ ସେ ଗ୍ରାମର ଗୋଟାଏ ନକ୍ସା ପ୍ରସ୍ତୁତ କରିବା ଭଲ । ନକ୍ସାରେ ବିଭିନ୍ନ ଘର ଓ ପ୍ରତ୍ୟେକ ଘର ଯେଉଁଠାରେ କି ମେଲେରିଆ ଆକ୍ରାନ୍ତ ଲୋକେ ଅଛନ୍ତି ତାହା ଦର୍ଶାଇବା ଉଚିତ । ନକ୍ସା ଉପରେ ଦୃଷ୍ଟି ପକାଇବା ମାତ୍ରେ ବିପଜ୍ଜନକ ଅଞ୍ଚଳମାନ ସ୍ପଷ୍ଟ ଦେଖାଯିବା ଭଳି ଗୋଟାଏ ରେକର୍ଡ଼ ତେବେ ଯାଇ ସେ ରଖି ପାରିବେ । ତେବେ ତାଙ୍କ କଳ୍ପିତ ଯୋଜନା

ଖୁବ ସୁରୁଖୁରୁରେ ଅଗେଇ ପାରିବ । ତାଙ୍କ କାର୍ଯ୍ୟରେ କେହି ବାଧା ଦେଲେ ବା ଆପତ୍ତି କଲେ ଏବଂ ତାଲିକା ପ୍ରସ୍ତୁତ ପାଇଁ ଆବଶ୍ୟକୀୟ ବିଷୟ ନ ଯୋଗାଇଲେ ସେ କୌଣସି ଭାବେ ବ୍ୟସ୍ତ ହେବା ଠିକ୍ ନୁହେଁ ଅଥବା କୌଣସି ପ୍ରକାର ବଳ ପ୍ରୟୋଗର ଆଶ୍ରୟ ନେବା ଉଚିତ ନୁହେଁ । ସାହାଯ୍ୟ କରିବାକୁ ସେ ସେଠାକୁ ଆସିଛନ୍ତି ବୋଲି ଗ୍ରାମବାସୀମାନେ ଜାଣିବା ମାତ୍ରେ ସେମାନେ କ୍ରମେ ତାଙ୍କ ଅଧୀନତା ସ୍ୱୀକାର କରିବେ ଏବଂ ତାହାଙ୍କୁ ଅବଶ୍ୟକୀୟ ବିବରଣୀ ଯୋଗାଇବେ । ଇତି ମଧ୍ୟରେ ଗ୍ରାମ ନକ୍ସାରେ ସେମାନଙ୍କ ଘର ଏପରି ଭାବେ ଚିହ୍ନୋଟ କରି ରଖିବାକୁ ହେବ ଯେପରି ସେଠାରୁ ସେହି ଘରମାନ ବର୍ତ୍ତମାନ ପରୀକ୍ଷା କରା ନ ଯାଇଛି ବୋଲି ଜଣାଯିବ । ଯେଉଁ ଘରଗୁଡ଼ିକରେ ସଂକ୍ରାମକ ରୋଗ ରହିଛି, ଗ୍ରାମ ସେବକ ଏହି ପୁସ୍ତିକାରେ ୧୬ ଠାରୁ ୧୮ ପାଠରେ ବ୍ୟବସ୍ଥାମାନ ଅନୁସରଣ କରି ସେହି ଘରମାନଙ୍କ ପ୍ରତି ଦୃଷ୍ଟି ଦେବା ଉଚିତ । ଗୋଟାଏ ସୁସ୍ଥ ସମ୍ପ୍ରଦାୟକୁ ଏହି ବ୍ୟବସ୍ଥାମାନ ବିଶେଷ ସାହାଯ୍ୟ କରିବ । ତାଙ୍କର ଜାଣିବା ଉଚିତ ଯେ ମାଲେରିଆ ପ୍ରତିକାର ଅପେକ୍ଷା ପ୍ରତିରୋଧ ଖୁବ୍ ସହଜ ସାଧ୍ୟ । ସେଥିପାଇଁ ଉପରେ ଦର୍ଶା ଯାଇଥିବା ବିଷୟ ପ୍ରତି ଦୃଷ୍ଟି ଆକର୍ଷଣ କରି ପାରିଲେ ସଂକ୍ରମଣ ପ୍ରତିରୋଧ ଦ୍ୱାରା ମେଲେରିଆ ନିର୍ମୂଳ କରିବା ଦିଗରେ ସେ ମୂଲ୍ୟବାନ ସେବା କରି ପାରିବେ । ପ୍ରଥମାବସ୍ଥାରେ ସେ ଜୟଯୁକ୍ତ ନହେଲେ କୌଣସି ଭାବେ ହତୋତ୍ସାହ ହେବା ଉଚିତ ନୁହେଁ । ଧୈର୍ଯ୍ୟ ଓ ଏକାଗ୍ରତା ବଳରେ ଜୟ ହେବା ସୁନିଶ୍ଚିତ । ଅନେକ ଡାକ୍ତର ଅଛନ୍ତି ଯେଉଁମାନଙ୍କର ଚିକିତ୍ସା ସଂକ୍ରାନ୍ତରେ କୌଣସି ବିଶେଷ ଜ୍ଞାନ ନଥାଏ । ଅଥଚ ସେମାନେ ବହୁ ସମୟ ନଷ୍ଟକରି ଇଞ୍ଜେକସନ୍‌ମାନ ଦିଅନ୍ତି । ଶେଷରେ ସେମାନଙ୍କ ଚେଷ୍ଟା ଫଳପ୍ରଦ ହୁଏ ନାହିଁ । ଅନେକ ସ୍ଥଳରେ ବିଶେଷଜ୍ଞମାନେ ସୁଦ୍ଧା ଫଳପ୍ରଦ ଡାକ୍ତରୀ ଚିକିତ୍ସା କରିବାରେ ଅକ୍ଷମ ହୁଅନ୍ତି । ଯେପରି ଜଣା

ଯାଉଛନ୍ତି ମେଲେରିଆ ପାଇଁ କୌଣସି ଅମୋଘ ଉପଶମ ବ୍ୟବସ୍ଥା ନାହିଁ; ଯଦି ବା ଉପଯୁକ୍ତ ଚିକିତ୍ସା କରାଯାଏ ତାହାହେଲେ ଏପରି ଜଣକୁ ନେବାକୁ ହେବ ତାହାର ରୋଗ ଓ ଚିକିତ୍ସା ସଂକ୍ରାନ୍ତରେ କିଛି ବିଶେଷ ଶିକ୍ଷା ଥିବ । ରୋଗ ଚିକିତ୍ସା ସମ୍ବନ୍ଧେ ଏହି ପୁସ୍ତକର ୧୮ ପାଠରେ ଦିଆ ଯାଇଥିବା ବ୍ୟବସ୍ଥାମାନଙ୍କ ପ୍ରତି ରୋଗୀମାନେ ଯେପରି ଭାବେ ଅନୁରକ୍ତ ହୋଇ ପାରିବେ ସେଥିପ୍ରତି ତାଙ୍କୁ ଦୃଷ୍ଟି ଦେବାକୁ ହେବ । ଦାତବ୍ୟ ଔଷଧ ଲୟ ଓ ହାସପାତାଳର ଡାକ୍ତର-ମାନଙ୍କ ନିକଟକୁ ସେହି ଗ୍ରାମ ସେବକଙ୍କୁ ଯିବାକୁ ହେବ । ଏଥିରେ ତାଙ୍କର ବିଶେଷ ଆଗ୍ରହ ନଥିଲେ ଆଗ୍ରହ ଥିବା ଲୋକଙ୍କୁ ସେ ଏହି ଘର ହିସାବ କାର୍ଡ ଗୁଡ଼ିକ ଦେଖାଇବା ଉଚିତ । ହୁଏତ ସେମାନେ ଆଗ୍ରହର ସହିତ ଏଥିପ୍ରତି ଦୃଷ୍ଟିଦେଇ ପାରନ୍ତି । ଏପରି ଭାବେ ସେ ଯଦି ଧୈର୍ଯ୍ୟର ସହିତ ବ୍ୟକ୍ତିଗତ ଭାବେ କିଛି କରି ନପାରେ ଅନ୍ତତଃ ଅନ୍ୟ ସୂତ୍ରରୁ ସେମାନଙ୍କ ସେ ଚିକିତ୍ସା ଯୋଗାଇବା ବ୍ୟବସ୍ଥା କରିବାକୁ ହେବ । ଆଉ ଗୋଟାଏ ସେବା କରିବା ତାଙ୍କର କର୍ତ୍ତବ୍ୟ ତାହା ହେଉଛି ରୋଗୀର ପଥ୍ୟାପଥ୍ୟ ବ୍ୟବସ୍ଥା । ଏ ସଂକ୍ରାନ୍ତରେ ତାଙ୍କୁ ପଥ୍ୟାପଥ୍ୟ ସମ୍ବନ୍ଧେ ସମସ୍ତ ଜ୍ଞାତବ୍ୟ ବିଷୟମାନ ଖୁବ୍ ଯତ୍ନ ସହକାରେ ପାଠ କରିବାକୁ ହେବ ଏବଂ ଦେଖିବାକୁ ହେବ ଅତି ଗରିବ ରୋଗୀ ସୁଦ୍ଧା ଗ୍ରାମର ସମ୍ପଦଶାଳୀ ଲୋକଙ୍କ ଠାରୁ ଯେପରି ଦୁଧ, ଡାଲି ଓ ପରିବା ପାଇପାରିବ । ତାର ଆଉରି ଦେଖିବାର କଥା ଯେ ଯେଉଁମାନେ ସେତେ ଗରିବ ନୁହନ୍ତି ସେମାନେ ଯେପରି ନିର୍ଦ୍ଦିଷ୍ଟ ମାତ୍ରାରେ ପଥ୍ୟାପଥ୍ୟ ପାଇ ପାରିବେ । ଏଥିରେ ସେ କୃତକାର୍ଯ୍ୟ ହେଲେ ଗାଁ ଲୋକଙ୍କ ପକ୍ଷେ ସେ ଜଣେ ଉତ୍ତମ ଡାକ୍ତର ହୋଇ ପାରିବେ । ଗ୍ରାମର ସାଧାରଣ ସ୍ୱାସ୍ଥ୍ୟ ଉନ୍ନତ ହେବା ଦିଗରେ ସୁଦ୍ଧା ଚେଷ୍ଟା କରିବା ଆବଶ୍ୟକ । ଏପରି କରିବା ଦ୍ୱାରା ଚିକିତ୍ସା କାର୍ଯ୍ୟରେ ପ୍ରକୃତ ସାହାଯ୍ୟ ହୋଇ ପାରିବ ।

ଶେଷରେ ଜଣେ ବନ୍ଧୁ ଭାବରେ ସେହି ଗ୍ରାମ ସେବକଙ୍କୁ ଯେଉଁମାନଙ୍କୁ ମେଲେରିଆ ଆକ୍ରମଣ କରେ ସେମାନଙ୍କୁ ଚିକିତ୍ସା କାର୍ଯ୍ୟରେ ସାହାଯ୍ୟ କରିବାକୁ ହେବ । ଗ୍ରାମବାସୀମାନେ ବୁଝିବା ଦରକାର ଗ୍ରାମ ସେବକ ସେମାନଙ୍କ ମଧ୍ୟରେ କାର୍ଯ୍ୟ କରିବା ପାଇଁ କୌଣସି ଭାବେ ଭୀତ ନୁହନ୍ତି । ଗ୍ରାମ ଲୋକଙ୍କ ମଙ୍ଗଳ କାମନା ତାଙ୍କର ଏକମାତ୍ର ଉଦ୍ଦେଶ୍ୟ, ତାଙ୍କର ବିଶ୍ୱାସ ଯେ ଗ୍ରାମବାସୀମାନେ ସୁସ୍ଥ ଓ ଉନ୍ନତ ହୋଇ ପାରିବେ । ସେମାନେ ଏପରି ଭାବେ ମରିବା ପାଇଁ କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ ଏବଂ ସେ ସବୁ ଦିଗରେ ସେମାନଙ୍କୁ ସାହାଯ୍ୟ ଦେଇ ପାରିବେ । ଏପରି କେତେକ ଧାରଣା ଗ୍ରାମବାସୀମାନଙ୍କ ମନରେ ସେହି ସମାଜ ସେବକଙ୍କୁ ଜନ୍ମାଇବାକୁ ହେବ । ଫଳରେ ଗ୍ରାମବାସୀମାନେ ବିଶେଷ ଭାବେ ଆନନ୍ଦ ଓ ଉତ୍ସାହିତ ହେବେ, କାରଣ ଆନନ୍ଦ ଉତ୍ଫୁଲ୍ଲ ଚିକିତ୍ସାର ଗୋଟିଏ ପ୍ରଧାନ ସହାୟକ ।

ଏହି ପୁସ୍ତକରେ ବିଭିନ୍ନ ପାଠରେ ଦିଆ ଯାଇଥିବା ସୂଚନାମାନ ବିଶେଷ ମନଯୋଗ ସହିତ ପାଳନ କରି ସେହି ଗ୍ରାମ ସେବକ କାର୍ଯ୍ୟ କରିବା ଉଚିତ, ଶୀଘ୍ର ଫଳ ଲାଭ କରିବା ପାଇଁ ସେ କଦାପି ଦୃଷ୍ଟି ଦେବା ଉଚିତ ନୁହେ । ମାତ୍ର ତାଙ୍କର ପଥ-ପ୍ରଦର୍ଶକ ଭାବରେ କାର୍ଯ୍ୟ କରିଯିବା କର୍ତ୍ତବ୍ୟ । ଏହାର ଫଳାଫଳ ହୁଏତ ଅନେକ ବର୍ଷ ପର୍ଯ୍ୟନ୍ତ ଦେଖା ଯାଇନପାରେ । ପ୍ରତ୍ୟେକ ଦେଶ ହିତୈଷୀ ସଦ୍ୟ ଫଳ କିମ୍ବା ଯଶ ପ୍ରତି ଦୃଷ୍ଟି ନଦେଇ କେବଳ ଭବିଷ୍ୟତ ପାଇଁ କାର୍ଯ୍ୟ କରିଯିବା ଉଚିତ । ସ୍ୱାସ୍ଥ୍ୟପ୍ରତି ପ୍ରଥମେ ଦୃଷ୍ଟି ଦେବାକୁ ହେବ ଏ କଥା ତାଙ୍କୁ ଗ୍ରାମବାସୀମାନଙ୍କୁ ଜଣାଇବାକୁ ହେବ ଏବଂ ସ୍ୱାସ୍ଥ୍ୟହିଁ ସମ୍ପଦ ଏହି ଉକ୍ତି ସେମାନେ ସର୍ବଦା ମନେ ରଖିବା ଉଚିତ ।



# ୨୦ ମେଲେରିଆରୁ ରକ୍ଷା ପାଇବାର ଉପାୟ

ଉପକୂଳ ଅଞ୍ଚଳରେ ଏକ ବିସ୍ତୃତ ହ୍ରଦ କୂଳରେ 'ହୀରପୁର' ନାମକ ଗୋଟିଏ ଗ୍ରାମ ଅବସ୍ଥିତ। (ଛବି ୭୯) ଏହି ଗ୍ରାମ ମେଲେରିଆ ଦ୍ୱାରା କ୍ରମାଗତ ଆକ୍ରାନ୍ତ ହୋଇଥାଏ । ଗ୍ରାମବାସୀମାନେ କୃଷକର ମୂଲଲାଗି ଜୀବିକା ଉପାର୍ଜନ କରନ୍ତି । ମେଲେରିଆ ଦ୍ୱାରା ବାରମ୍ବାର ଆକ୍ରାନ୍ତ ହେବା ଫଳରେ ସେମାନେ ବିଶେଷ ଦୁର୍ବଳ ଓ ଶକ୍ତିହୀନ ହୋଇ ପଡ଼ିଲେ । ତେଣୁ ଶ୍ରମଜୀବୀ ଜନସାଧାରଣ ସ୍ୱାସ୍ଥ୍ୟ ହୀନ ଓ ସମ୍ପଦଶୂନ୍ୟ ହୋଇ ପଡ଼ିଲେ । ଦୁର୍ଭାଗ୍ୟ ବଶତଃ ଗ୍ରାମବାସୀମାନେ ନିତାନ୍ତ ଅଶିକ୍ଷିତ, ଅନ୍ଧବିଶ୍ୱାସୀ ଓ ଗରିବ ଥିଲେ । ମେଲେରିଆ ଫଳରେ ସେମାନେ ଦିନୁ ଦିନୁ ଅଧିକ ଗରିବ ହୋଇ ପଡ଼ିଲେ । 'ଲଳିତ ମୋହନ' ନାମରେ ଜଣେ ପଲ୍ଲୀମଙ୍ଗଳ ସମିତିର ସଭ୍ୟ ସେହି ଗ୍ରାମକୁ ଆସି ସେଠାରେ ପଲ୍ଲୀମଙ୍ଗଳ ସମିତିର ଗୋଟିଏ କେନ୍ଦ୍ର ସ୍ଥାପନ କରିବା ପାଇଁ ଉଦ୍ୟମ କଲେ । ଗ୍ରାମରେ ପ୍ରବେଶ କରିବା ମାତ୍ରେ ସେ ଦେଖିଲେ ଯେ ଗ୍ରାମର ଲୋକେ ରକ୍ତଶୂନ୍ୟ । ଦୁର୍ବଳ ଓ ଶ୍ରୀହୀନ ଦେଖାଯାଉଛନ୍ତି । ସେମାନଙ୍କ ଜମି କୃଷି ନହୋଇ ପଡ଼ିଆ ପଡ଼ି ରହୁଛି । ସେମାନେ ଆହାର ଓ ପରିଧେୟ ଅଭାବରୁ କଷ୍ଟ ପାଉଛନ୍ତି । ଅନେକ ଲୋକ ଜ୍ୱରରେ ପୀଡ଼ିତ ହୋଇ ପଡ଼ି ରହୁଛନ୍ତି । ଗ୍ରାମର ଏହି କରୁଣ ଚିତ୍ର ଦେଖି ସେ ଖୁବ୍ ବିଚଳିତ ହୋଇ ପଡ଼ିଲେ ଏବଂ ଚିକିତ୍ସା ସକାଶେ ହାସପାତାଲକୁ ଯିବାକୁ ପୀଡ଼ିତ ଲୋକମାନଙ୍କୁ ପ୍ରବର୍ତ୍ତାଇଲେ । ଡାକ୍ତର ରୋଗୀମାନଙ୍କୁ ମେଲେରିଆର ଏକମାତ୍ର ମହୌଷଧ କୁଇନାଇନ ଦେଲେ । ଯେଉଁ ରୋଗୀ କୁଇନାଇନ ଖାଇବାକୁ ମନାକରେ ତା ଭାଗ୍ୟରେ ମରଣ ଲେଖାହୋଇଥାଏ । ସେହି ରୋଗୀର ଅନ୍ତିମ ସ୍ଥାନ ହେଉଛି ଶ୍ମଶାନ । ତହିଁଆରଦିନ ଲଳିତ ମୋହନ




FIGURE 79

ଗ୍ରାମଲୋକଙ୍କ ମଧ୍ୟରେ ବାଣ୍ଟିବା ପାଇଁ କେତେକ ପରିମାଣରେ ଦୁଧ, ଅନ୍ୟାନ୍ୟ ଖାଦ୍ୟ, ଲୁଗା ଓ କ୍ୱିନାଇନ ନେଇ ସେହି ଗ୍ରାମକୁ ପୁଣି ଆସିଲେ । ଗ୍ରାମଲୋକେ ଲଳିତମୋହନ ଦେଇଥିବା ସମୟୋପଯୋଗୀ ସାହାଯ୍ୟ ବ୍ୟବସ୍ଥାରେ ବିଶେଷ ତୃପ୍ତ ହେଲେ । ସମସ୍ତ ଗ୍ରାମବାସୀଙ୍କୁ ଗ୍ରାମ ପାଠଶାଳାରେ ରୁଣ୍ଡହେବା ପାଇଁ ସେ ନିର୍ଦ୍ଦେଶ ଦେଲେ । ସେଠାରେ ସ୍ୱାସ୍ଥ୍ୟ ବିଭାଗୀୟ ଅଫିସର ସେମାନଙ୍କୁ ମେଲେରିଆ ଉତ୍ପତ୍ତିର କାରଣ, ସଂଚରଣ ଓ ତାର ନିବାରଣ ସଂକ୍ରାନ୍ତରେ ସମସ୍ତ ବିଷୟ ବୁଝାଇ ଦେଲେ । ସ୍ୱାସ୍ଥ୍ୟ ଅଫିସର ମହୋଦୟ ମେଲେରିଆ କିପରି ଗୋଟିଏ କ୍ଷୁଦ୍ର ସଂକ୍ରାମକ ଜୀବାଣୁ ଦ୍ୱାରା ଜାତ ହୁଏ ତାହା ସେମାନଙ୍କୁ ବୁଝାଇ ଥିଲେ । ଏହି ଜୀବାଣୁକୁ ଅନୋଫେଲିସ ଜାତୀୟ ମାଈ ମଶାମାନେ ମେଲେରିଆ ରୋଗୀଠାରୁ ସୁସ୍ଥ ଓ ସବଳ ଲୋକର ଶରୀରକୁ ସଂଚାର କରନ୍ତି । ମଶାମାନେ ପାଣିଥିବା ଜାଗାରେ ଡିମ୍ବ ଦିଅନ୍ତି । ପାଣି ନଥିବା ଅଂଚଳରେ ମଶା ଦେଖାଯାଏ ନାହିଁ । ଫଳରେ ମେଲେରିଆ ଆଉ ଜାତ ହୁଏ ନାହିଁ । ଏହି ମଶାମାନେ ଜଳସ୍ରୋତ, ଜଳାଶୟ, କୂପ ଓ ଗାତ ଅବା ଯେକୌଣସି ଜଳ ପୂର୍ଣ୍ଣ ଜାଗାରେ ଡିମ୍ବ ଦିଅନ୍ତି । ଡିମ୍ବ, ଳୁଆ ଓ ଶିଶୁ ପ୍ରଭୃତି ବିଭିନ୍ନ ରୂପାନ୍ତର ପରେ ମଶାମାନେ ଯୌବନାବସ୍ଥାକୁ ଆସନ୍ତି । ମଶା ନିବାରଣରେ ମେଲେରିଆ ମଧ୍ୟ ନିବାରଣ ହୁଏ ବୋଲି ମେଲେରିଆ ଅଫିସର ମହୋଦୟ ପ୍ରାଞ୍ଜଳ ଭାଷାରେ ବୁଝାଇ ଦେଇଥିଲେ ।

ପର୍ବତ ଦେହରୁ ଜାତ ଝରଣା ଓ ବାଲୁଙ୍ଗା ପ୍ରଭୃତି ଅନାବଶ୍ୟକ ଭୂଣଦଳ ଦ୍ୱାରା ପୂର୍ଣ୍ଣ ହୋଇ ରହିଥିବା ଜଳାଶୟମାନ ମଶା ଉତ୍ପତ୍ତି ପାଇଁ ଅନୁକୂଳ ଯେଣୁ । ରେଳପଥ ନିର୍ମାଣ ହେବା ବେଳେ ବା ସେତୁ ଓ ବନ୍ଧ ଇତ୍ୟାଦି ତିଆରି ହେବା ବେଳେ ମାଟି ଖୋଳିବା

ଫଳରେ କେତେ ଗୁଡ଼ିଏ ଖାତ ହୋଇଯାଏ। ଏହି ଖାତରେ ଜଳ ରହି କ୍ରମେ ଦୂଷିତ ହୋଇଯାଏ ଏବଂ ମଶା ଉତ୍ପତ୍ତିର ପ୍ରଧାନ ସ୍ଥଳୀ ହୋଇ ପଡ଼େ। ସ୍ୱାସ୍ଥ୍ୟ ଅଫିସର କହିଥିଲେ ଯେ ଏ ସମସ୍ତ ମନୁଷ୍ୟକୃତ ମେଲେରିଆର ଗୋଟାଏ ନମୁନା, ସୁତରାଂ ଗ୍ରାମବାସୀମାନେ ଆପଣା ଆପଣାର ଚେଷ୍ଟାରେ ମେଲେରିଆରୁ ନିସ୍ତାର ପାଇ ପାରିବେ। କେବଳ ସେମାନେ ଏତିକି କାର୍ଯ୍ୟ କରିବା ପାଇଁ ମନ ବଳାଇବା ଆବଶ୍ୟକ ବୋଲି ସେ ସୂଚାଇ ଦେଇଥିଲେ।

ଗୋଟାଏ କ୍ଲୋରିଙ୍ଗଲ କେନ୍ଦ୍ର ସ୍ଥାପିତ ହେଲା ଏବଂ ଗ୍ରାମବାସୀମାନେ ସେମାନଙ୍କ ନିଜ ପରିଶ୍ରମ ଦ୍ୱାରା ପାଣି ଜମାହୋଇ ରହିଥିବା ଖାତ-ମାନଙ୍କରେ ମାଟି ପକାଇ ସେସବୁ ସମତଳ କରିବାକୁ ଲାଗିଲେ। ପୋଖରୀ ଗୁଡ଼ିକରୁ ବାଳୁଙ୍ଗା ପ୍ରଭୃତି ସମସ୍ତ ଅନାବଶ୍ୟକ ତୃଣ ପରିଷ୍କାର କରି ଦିଆଗଲା। ମଶାଡ଼ିମ୍ବ ଓ ଛୁଆ ପ୍ରଭୃତିଙ୍କୁ ଖାଇଯିବା ପାଇଁ ଜଳାଶୟ ଓ କୂଅମାନଙ୍କରେ ମାଛ ଛଡ଼ାଗଲେ। ଜଳ ଯେପରି ଦୂଷିତ ନହୁଏ ଓ ଜମି ନରହେ ସେଥିପାଇଁ ଭୂମିର ନିମ୍ନ ଦେଶରେ ଓ ଉପରେ ଖୋଲା ଭାବେ ନର୍ଦ୍ଦମା ତିଆରି ହେଲା। ଅନ୍ୟାନ୍ୟ ଯେଉଁସ୍ଥାନରେ ମଶା ଉତ୍ପନ୍ନ ହୁଅନ୍ତି ସେ ସ୍ଥାନମାନଙ୍କରେ 'କ୍ରୁଡ଼' ତେଲ ସେଚନ କରାହେଲା। ଏପରି ହେଲେ ମଶା ଛୁଆ ମରିଯିବାର କଥା। ପୁଣି ବାସଘରମାନଙ୍କରେ ଯୌବନାବସ୍ଥାପନ୍ନ ମଶାମାନଙ୍କ ଧ୍ୱଂସ ସକାଶେ କୀଟ ଧ୍ୱଂସୀ ଔଷଧିଜଳ ସେଚନ କରାହେଲା। କ୍ଲୋରିଙ୍ଗଲ କର୍ତ୍ତୃପକ୍ଷ ଓ ସ୍ୱାସ୍ଥ୍ୟ ବିଭାଗୀୟ ଅଫିସରମାନଙ୍କ ନିର୍ଦ୍ଦେଶରେ ଗ୍ରାମବାସୀମାନେ ସମସ୍ତ ପ୍ରକାର ସହଯୋଗ ଓ ସକ୍ରିୟ ସାହାଯ୍ୟ କରିବା ଫଳରେ ଅଳ୍ପ କେତେକ ସପ୍ତାହ ମଧ୍ୟରେ ମଶା ଉତ୍ପତ୍ତି କେତେକ ପରିମାଣରେ ହ୍ରାସ ହେଲା। ମଶା କାମୁଡ଼ାରୁ

ରକ୍ଷା ପାଇବା ପାଇଁ ଲୋକେ ମଶାରି ବ୍ୟବହାର କରିବା ପାଇଁ ଉତ୍ସାହିତ ହେଲେ । (୧୬)

ଗୋଟିଏ ଛୋଟ ବେତାର ଷ୍ଟେସନ ଓ ପ୍ରମୋଦ ଉଦ୍ୟାନ ପ୍ରତିଷ୍ଠା କରାହେଲା । ଗ୍ରାମବାସୀମାନଙ୍କ କୌତୂହଳ ଉଦ୍ଦୀପିତ କରିବା ଉଦ୍ଦେଶ୍ୟରେ ଏଠାରେ ପ୍ରତ୍ୟହ ସେମାନଙ୍କର ଦୈନିକ କାର୍ଯ୍ୟକ୍ରମ ପରେ ଏକତ୍ରିତ ହେବାର ବ୍ୟବସ୍ଥା ହେଲା । ସେମାନଙ୍କର ଜ୍ଞାନ ବୃଦ୍ଧି ପାଇଲା ଏବଂ କାଳକ୍ରମେ ଅନ୍ଧ ବିଶ୍ୱାସ ଓ ଅଜ୍ଞତା ଦୂର ହୋଇ ଗଲା । ଚିକିତ୍ସାଳୟରେ ଗୋଟିଏ 'କୁଇନାଇନ' ବିତରଣ କେନ୍ଦ୍ର ସ୍ଥାପିତ ହେଲା । ଅବସ୍ଥା ସ୍ୱଚ୍ଛଳ ଲୋକଙ୍କୁ ବିକ୍ରି କରିବା ପାଇଁ ଡାକ-ଅଫିସରେ କେତେକ 'କୁଇନାଇନ୍' ମହଜୁଦ ରଖାଗଲା ।

ଲଳିତ ମୋହନ ଓ ତାହାଙ୍କ ସହକର୍ମୀ ଦଳ ଏକମାସ ପରେ ସେହି ଗ୍ରାମ ଛାଡ଼ି ପୁଣି ଏକବର୍ଷ ପରେ ଆଉ ଥରେ ଆସିଲେ । ଗ୍ରାମବାସୀମାନଙ୍କୁ ବିଶେଷ ସୁଖୀ, ସମ୍ପଦଶାଳୀ ଓ ଆନନ୍ଦିତ ଦେଖି ସେ ଖୁବ୍ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ଗ୍ରାମବାସୀବର୍ଗ ବିଶେଷ ଉତ୍ସାହ ଓ ଆଗ୍ରହର ସହିତ ସ୍ୱାସ୍ଥ୍ୟ ବିଭାଗୀୟ କର୍ମଚାରୀମାନଙ୍କ ସୂଚିତ ପନ୍ଥା ଓ ନିର୍ଦ୍ଦେଶ ପାଳନ କରି ଗ୍ରାମଟିକୁ ମେଲେରିଆରୁ ମୁକ୍ତ କରିପାରିଛନ୍ତି ।

ଗ୍ରାମବାସୀମାନଙ୍କ ପକ୍ଷରୁ ପଲ୍ଲୀମଙ୍ଗଳ କର୍ମୀ, ସ୍ୱାସ୍ଥ୍ୟ ବିଭାଗୀୟ କର୍ମଚାରୀ ଓ ଜୁନିଅର ରେଡ୍‌କ୍ରସ ସଂଘ ସଭ୍ୟମାନଙ୍କଠାରେ କୃତଜ୍ଞତା ଜଣାଇବା ପାଇଁ ସେହି ଗ୍ରାମର ପ୍ରଭାବଶାଳୀ ଜମିଦାର ହଳଧର ପ୍ରଧାନ ଗୋଟାଏ ସଭା ଡକାଇଲେ । ଏମାନେ ଯେ କେବଳ ତୁରନ୍ତ ତଥା ସମୟୋପଯୋଗୀ ସାହାଯ୍ୟ ଦେଇଥିଲେ ତାହା ନୁହେଁ, ମେଲେରିଆ ସହିତ ଯୁଦ୍ଧକରି ତାହାକୁ ଗ୍ରାମରୁ ବହିଷ୍କାର କରିବା

ସୁଝିବା ପାଇଁ ଆବଶ୍ୟକୀୟ ଉପଦେଶ ଓ ଶିକ୍ଷା ଦେଇଥିଲେ। ଯଦି ଗ୍ରାମବାସୀମାନେ ସମ୍ପୂର୍ଣ୍ଣ ସହଯୋଗ ଓ ସାହାଯ୍ୟ ଦିଅନ୍ତି ତାହାହେଲେ ରୋଗ ଓ ମରଣ ବିରୁଦ୍ଧରେ ଯୁଦ୍ଧ ଚଳାଇବା ସମ୍ଭବପର ବୋଲି ସ୍ୱାସ୍ଥ୍ୟ ଅଫିସର ମହୋଦୟ ସଭାରେ ବୁଝାଇ ଦେଇଥିଲେ।

— ସମାପ୍ତ —



ବ୍ରହ୍ମପୁର ଶାରଦା ପ୍ରେସ୍‌ରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ
୯୯୬